# ସ୍ମରଣିକା



## ଅଷ୍ଟାଦଶ ଭୁବନେଶ୍ୱର ପୁସ୍ତକ ମେଳା : ୨୦୦୨

# ଅଷ୍ଟାଦଶ ଭୁବନେଶ୍ୱର ପୁସ୍ତକ ମେଳା




ସଂପାଦନା:

**ପୁସ୍ତକ ମେଳା କମିଟି**

ପ୍ରକାଶକାଳ :

**୨୬ ଫେବ୍ରୁଆରୀ, ୨୦୦୨**

ଯୋଗାଯୋଗ :

**ଭି.ଏ.-II/4, ୟୁନିଟ୍-2**

**ଭୁବନେଶ୍ୱର- 751 009**

ଅକ୍ଷର ସଜ୍ଜା ଓ ମୁଦ୍ରଣ :

**ସିଟି ପ୍ରିଣ୍ଟର୍ସ, ଭୁବନେଶ୍ୱର-୧୫**

ସହଯୋଗ ରାଶି :

**ଦଶଟଙ୍କା ମାତ୍ର**

# ଭୁବନେଶ୍ୱର ପୁସ୍ତକ ମେଳା କମିଟି
## ଭୁବନେଶ୍ୱର

**ସାତକଡ଼ି ହୋତା**
ସଭାପତି

**ବରେନ୍ଦ୍ର କୃଷ୍ଣ ଧଳ**
ସଂପାଦକ

**ଉତ୍ତମ ଚରଣ ନାୟକ**
କୋଷାଧ୍ୟକ୍ଷ

କାର୍ଯ୍ୟନିର୍ବାହୀ ସଦସ୍ୟବୃନ୍ଦ :

ଡ. ଖଗେଶ୍ୱର ମହାପାତ୍ର
ଡ. ବିଭୂତି ପଟ୍ଟନାୟକ
ଯୁଗଳ କିଶୋର ଦତ୍ତ
ବିଜୟକୃଷ୍ଣ ମହାନ୍ତି
ସୌରୀନ୍ଦ୍ର ବାରିକ
ଶରତ କୁମାର ନାୟକ

# ଭୁବନେଶ୍ୱର ପୁସ୍ତକ ମେଳା: ସତର ପୂରି ଅଠର

ଚାହୁଁ ଚାହୁଁ ସତର ପୂରି ଅଠର ହେଲା । ଭୁବନେଶ୍ୱର ପୁସ୍ତକମେଳା ଆଜି ଅଷ୍ଟାଦଶୀ । ଆକାର, ପ୍ରକାର ଏବଂ ଅଭିଜ୍ଞତାର ଐଶ୍ୱର୍ଯ୍ୟରେ ଏହି ମେଳା ଆଜି ଲେଖକ, ପ୍ରକାଶକ, ପାଠକମାନଙ୍କ ମହାମିଳନ ତୀର୍ଥରେ ପରିଣତ ହୋଇଛି । ଓଡ଼ିଶାର ପ୍ରାୟ ସମସ୍ତ ସମ୍ଭ୍ରାନ୍ତ ପୁସ୍ତକ ପ୍ରକାଶକ, ବିକ୍ରେତା ଓ ବିତରକ ଯେପରି ଏହି ମେଳାରେ ଅଂଶଗ୍ରହଣ କରିଛନ୍ତି, ସେହିପରି ଭାରତବର୍ଷର ବିଭିନ୍ନ ସହର ନଗରର ବିଭିନ୍ନ ଭାଷାର ପୁସ୍ତକ ପ୍ରକାଶକ ଓ ବିକ୍ରେତାମାନେ ଏହି ମେଳାରେ ନିୟମିତ ଭାଗ ନେଇ ଏହାକୁ ଏକ ଜାତୀୟ ପୁସ୍ତକ ଉତ୍ସବରେ ରୂପାନ୍ତରିତ କରିଛନ୍ତି । ପୁସ୍ତକମେଳା ଆଜିକାଲି ଆଉ ଏକ ପୁସ୍ତକ ପ୍ରଦର୍ଶନୀ କିମ୍ବା ବହି ବାଣିଜ୍ୟ କେନ୍ଦ୍ର ହୋଇ ନାହିଁ; ଏହା ଏକ ଆନ୍ଦୋଳନରେ ପରିଣତ ହୋଇଛି । ବୈଦ୍ୟୁତିକ ଗଣମାଧ୍ୟମର ପ୍ରସାର ଫଳରେ ଧୀରେ ଧୀରେ ପାଠକ ସିନେମା, ଟେଲିଭିଜନର ଦର୍ଶକ ହୋଇଯାଉଛି । ପଠନ ସଂସ୍କୃତି ସଙ୍କୁଚିତ ହୋଇ ଯିବାର ବିପଦ ଦେଖା ଦେଇଛି । ସେଥିପାଇଁ ବହିକୁ ପାଠକ ପାଖରେ ପହଞ୍ଚାଇ ଦେବା ଲାଗି ଏବଂ ବହି ପାଇଁ ପାଠକ ଭିତରେ ଏକ ସାରସ୍ୱତ ତୃଷ୍ଣା ସୃଷ୍ଟି କରିବା ପାଇଁ ବହି ମେଳାକୁ ଏକ ଆନ୍ଦୋଳନର ରୂପ ଦେବା ଜରୁରୀ ହୋଇ ଉଠିଛି । ଏହି ଆବଶ୍ୟକତାକୁ ଆଖି ଆଗରେ ରଖି ଦୁଇବର୍ଷରେ ଥରେ ନୂଆଦିଲ୍ଲୀ ପ୍ରଗତି ମଇଦାନରେ ବିଶ୍ୱ ବହି ମେଳା ଏବଂ କୋଲକାତାରେ ଗତ ସତେଇଶି ବର୍ଷ ହେଲା ଆରମ୍ଭ ହୋଇଛି କୋଲକାତା ପୁସ୍ତକ ମେଳା ।

ଓଡ଼ିଶାରେ ଭୁବନେଶ୍ୱର ପୁସ୍ତକ ମେଳାର ଆଦର୍ଶରେ ଅନୁପ୍ରାଣିତ ହୋଇ ବିଭିନ୍ନ ଜିଲ୍ଲା, ସହରରେ ମଧ୍ୟ ବର୍ଷର ବିଭିନ୍ନ ସମୟରେ ବହି ମେଳାମାନ ଆୟୋଜିତ ହେଉଛି । ସୀମିତ ଲକ୍ଷ୍ୟ ସାଧନ ଦିଗରେ ଏହି ସବୁ ମେଳା ସଫଳ ହେବା ସଙ୍ଗେ ସଙ୍ଗେ ବହି ବିକ୍ରି ଓ ପାଠକ ସୃଷ୍ଟିରେ ନିଃସନ୍ଦେହରେ ସହାୟତା କରିଛି ।

ଭୁବନେଶ୍ୱର ପୁସ୍ତକ ମେଳା କେବଳ ଲେଖକମାନଙ୍କ ଦ୍ୱାରା ଆୟୋଜିତ ଭାରତବର୍ଷର ଏକମାତ୍ର ମେଳା ନୁହେଁ, ବିନା ସରକାରୀ ସହାୟତାରେ ପାଠକ-ପ୍ରକାଶକମାନଙ୍କ ସହାୟତାରେ କୋଲକାତା ପରେ ଦ୍ୱିତୀୟ ଲୋକପ୍ରିୟ ବହିମେଳା ଭାବରେ ଭାରତବର୍ଷରେ ଖ୍ୟାତି ଅର୍ଜନ କରିଛି । ଫେବୃଆରୀ ଛବିଶ ତାରିଖରୁ ମାର୍ଚ୍ଚ ସାତ ତାରିଖ ପର୍ଯ୍ୟନ୍ତ ଦଶ ଦିନ ଧରି ଚାଲିଥିବା ଏହି ମେଳାକୁ କେବଳ ଭୁବନେଶ୍ୱର ନୁହେଁ; ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ପୁସ୍ତକପ୍ରେମୀ ପାଠକ ଲେଖକମାନେ ଆସନ୍ତି । ପୃଥିବୀରେ ଇଂରେଜୀ ଭାଷାରେ ଏବଂ ଭାରତରେ ହିନ୍ଦୀ, ବଙ୍ଗଳା, ସଂସ୍କୃତ ଓ ଅନ୍ୟ ଆଞ୍ଚଳିକ ଭାଷାରେ କେତେ ପ୍ରକାର ବହି ଛାପା ହେଉଛି, ତାହା ଦେଖି ମୁଗ୍ଧ ହୁଅନ୍ତି । ଏହି ବହି ଦେଖା ଭିତରୁ ବହି କିଣିବାର ଇଚ୍ଛା ତିଆରି ହୁଏ । ଆଜି ନ କିଣିଲେ କାଲି; ଏ ବର୍ଷ ନ କିଣିଲେ ଆସନ୍ତାବର୍ଷ ବହି କିଣିବାର ଇଚ୍ଛା ଦର୍ଶକଙ୍କୁ ପାଠକ କରି ଦିଏ । ବହି ମେଳାର ଏହା ହିଁ ହେଉଛି ବିଶେଷତ୍ୱ । ବର୍ଷ ବର୍ଷ ଧରି ଦୋକାନରେ ଉପେକ୍ଷିତ ହୋଇପଡ଼ିଥିବା ବହି ରସିକ ପାଠକ ପାଖରେ ପହଞ୍ଚାଇ ଦିଏ ।

ଗତ ସତର ବର୍ଷର ଅଭିଜ୍ଞତା ଆମକୁ ଦର୍ଶକ ପାଠକ ଏବଂ ଅଂଶଗ୍ରହଣକାରୀ ପ୍ରକାଶକ ବିକ୍ରେତାମାନଙ୍କ ସୁବିଧା ଅସୁବିଧା ସଂପର୍କରେ ସଚେତନ କରି ଦେଇଛି । ଏ ବର୍ଷ ଅଂଶଗ୍ରହଣକାରୀ ପ୍ରକାଶକ ବିକ୍ରେତାମାନଙ୍କ ବିକ୍ରି ଅର୍ଥ ଗଚ୍ଛିତ ରଖିବା ଲାଗି ଏଲ୍ଲାବାଦ ବ୍ୟାଙ୍କର ଏକ ଶାଖା ମେଳା ପରିସର ମଧ୍ୟରେ ଖୋଲା ଯାଇଛି । ଦର୍ଶକମାନଙ୍କୁ ଟେଲିଫୋନ୍ ସୁବିଧା ଯୋଗାଇ ଦେବା ଲାଗି ଏସ୍.ଟି.ଡ଼ି., ପି.ସି.ଓ. ଏବଂ ଫ୍ୟାକ୍ସ କେନ୍ଦ୍ର ଏବଂ ଡାକ ସୁବିଧା ଯୋଗାଇ ଦେବା ଲକ୍ଷ୍ୟରେ ସ୍ୱତନ୍ତ୍ର ବ୍ୟବସ୍ଥା ରଖାଯାଇଛି ।

ଭୁବନେଶ୍ୱର ପୁସ୍ତକ ମେଳା ଓଡ଼ିଶାର ବିଶିଷ୍ଟ ସାଂସ୍କୃତିକ ମେଳା । ବହିର ଯେପରି ଉତ୍କୃଷ୍ଟ କୌଣସି ବିକଳ୍ପ ନାହିଁ; ବହିର ନିକଟବର୍ତ୍ତୀ ହେବା ଲାଗି ଭୁବନେଶ୍ୱର ବହି ମେଳାର କୌଣସି ବିକଳ୍ପ ନାହିଁ । ଆପଣମାନଙ୍କୁ ସମସ୍ତଙ୍କୁ ଭୁବନେଶ୍ୱର ବହି ମେଳାକୁ ସାଦର ନିମନ୍ତ୍ରଣ ।

# ସୂଚୀପତ୍ର





# ଓଡ଼ିଆ ସାହିତ୍ୟର ନୂତନ ବିଭବ

ସାତକଡ଼ି ହୋତା

ଓଡ଼ିଆ ସାହିତ୍ୟର ବିକାଶ ସଂପର୍କରେ ଯେଉଁମାନେ ସଚେତନ ସେମାନେ ଏହାର ନୂତନ ବିଭବ ଦେଖି ଆଦୌ ଆଶ୍ଚର୍ଯ୍ୟ ହେବେ ନାହିଁ । କେତେକ କ୍ଷେତ୍ରରେ ଅନେକ ପ୍ରାନ୍ତୀୟ ସାହିତ୍ୟ ପଛରେ ପଡ଼ିଥିବା ଓଡ଼ିଆ ସାହିତ୍ୟ ଅଳ୍ପ କେତେବର୍ଷ ମଧ୍ୟରେ ଜ୍ଞାନ ବିଜ୍ଞାନ, କଳା ଓ ଦର୍ଶନର ନବ ନବ ଭାବ ଓ ଉନ୍ମେଷକୁ ପ୍ରସାରିତ କରିବାରେ କିପରି ସଫଳତା ପାଇଛି ତାହାର ମୂଲ୍ୟାୟନ କରିବା ପାଇଁ ବେଳ ଆସିଛି । ଆଗକୁ ଯାଉଥିବା ପଥିକ କେବଳ ମାଇଲଖୁଣ୍ଟ ଗଣି ଗଣି ଅଗ୍ରଗତି କରେ ନାହିଁ, ତା' ଆଗରେ ଉନ୍ମୋଚିତ ହେଉଥିବା ନୂତନ ଦିଗନ୍ତ ଓ ଏହାର ଅଭିରାମ ରୂପ ତାକୁ ଯେତିକି ଉଲ୍ଲସିତ କରେ ସେତିକି ଅନୁପ୍ରାଣିତ କରେ । ଓଡ଼ିଶାର ପ୍ରାଚୀନ ଓ ମଧ୍ୟଯୁଗୀୟ ସାହିତ୍ୟ ସଂପର୍କରେ ଗର୍ବ କରିବାର କାରଣ ରହିଛି । ଆଧୁନିକ ସାହିତ୍ୟ ମଧ୍ୟ ଅର୍ବାଚୀନ ନୁହେଁ, କିନ୍ତୁ ନୂତନ ସାହିତ୍ୟକୁ ଧାରଣ କରିବା ସକାଶେ ଓଡ଼ିଆ ଭାଷାର ଯେପରି ବିକାଶ ହେବା କଥା ତାହା ହୋଇ ନଥିବାରୁ କେତେବର୍ଷ ପୂର୍ବେ ଅନେକ ବିଜ୍ଞାନ ଓ ପ୍ରଯୁକ୍ତି ବିଭାଗରେ ସାହିତ୍ୟ ନଥିଲା । ପ୍ରଯୁକ୍ତି ଓ ନୂତନ ଜ୍ଞାନ ଏବଂ ତତ୍ତ୍ୱର ବିସ୍ଫୋରଣ ଯେତିକି ବିଶ୍ୱକୁ ଆଲୋକିତ କରୁଛି ତାହା ସହିତ ତାଳ ଦେଇ ଯଦି ଓଡ଼ିଆ ଭାଷାର ସାମର୍ଥ ବୃଦ୍ଧି କରାନଯାଏ ତେବେ ନୂତନ ଜ୍ଞାନ ଓ ଦର୍ଶନର ବାହକ ଭାବେ ଭାଷାର ଉପଯୋଗ ହୋଇପାରିବ ନାହିଁ ।

ପାଞ୍ଚଶହ ବର୍ଷ ପୂର୍ବେ ଶାରଳା ଦାସ ଓ ଜଗନ୍ନାଥ ଦାସଙ୍କ ସମୟର ଓଡ଼ିଆ ଭାଷାର ସୌଷମ୍ୟ ଓ ଉତ୍କୃଷତା ଯେକୌଣସି ସାହିତ୍ୟର ଈର୍ଷାର ବିଷୟ । ଏପରିକି ଭୀମା ଭୋଇ ଓ ଫକୀର ମୋହନ ସାହିତ୍ୟରେ ଭାଷାର ବ୍ୟବହାରିକ ଦିଗକୁ ଯେପରି ଶକ୍ତିଶାଳୀ ଓ ସଂପ୍ରସାରିତ କରିଥିଲେ ତାହା ବିଂଶ ଶତାବ୍ଦୀର ଶେଷ ବେଳକୁ ଆହୁରି ବେଗଗାମୀ ହେବା ପରିବର୍ତ୍ତେ ଶିଥିଳ ହୋଇ ଯାଇଛି । ଫଳରେ ଓଡ଼ିଆ ମୁହଁର ଚଳନ୍ତି ଭାଷାର ପ୍ରାଧାନ୍ୟ ଗୋପୀନାଥ ମହାନ୍ତିଙ୍କ ପରେ କମି ଯାଇଛି । ମୁହଁର ବ୍ୟବହାରିକ ଶବ୍ଦରାଜି ଠାରୁ ସାହିତ୍ୟ ଅଲଗା ହୋଇ ଯାଉଥିବାରୁ ଅଭିବ୍ୟକ୍ତି ଶକ୍ତିଶାଳୀ ହେବା ପରିବର୍ତ୍ତେ ଦୁର୍ବଳ ହେଉଛି । ଏଇ ଧାରା ପ୍ରତିହତ କରିବାକୁ ହେବ । ଓଡ଼ିଆ ମୁହଁରେ ଚଳି ଯାଇଥିବା ପାର୍ଶୀ, ଉର୍ଦ୍ଦୁ, ହିନ୍ଦୀ, ବଙ୍ଗଳା, ଇଂରାଜୀ, ତେଲୁଗୁ ଶବ୍ଦ ସବୁକୁ ଓଡ଼ିଆ ଅଭିଧାନରେ ଓ ସାହିତ୍ୟରେ ଚଳାଇ ନେବା ପାଇଁ ପ୍ରୟାସ ହେବା ଆବଶ୍ୟକ । ସେହିପରି ଓଡ଼ିଶାରେ ପ୍ରଚଳିତ ବିଭିନ୍ନ ଅଞ୍ଚଳର କଥିତ ଭାଷା ଏ ପର୍ଯ୍ୟନ୍ତ ସାହିତ୍ୟକୁ ଆସି ନାହିଁ କିମ୍ବା ସମସ୍ତ କଥିତ ଭାଷା ଓ ତଥାକଥିତ ଷ୍ଟାଣ୍ଡାର୍ଡ଼ ଓଡ଼ିଆ ଭାଷା ମଧ୍ୟରେ ସମନ୍ୱୟ ସାଧନ କରିବା ସକାଶେ କୌଣସି ନିଷ୍ଠାପର ଉଦ୍ୟମ ହୋଇ ନାହିଁ । ଭାଷା ବିଜ୍ଞାନୀମାନେ କେନ୍ଦ୍ରସ୍ଥଳରେ ନ ରହି କଡ଼ରେ ରହି ଯାଉଥିବାରୁ ଭାଷାର ବ୍ୟବହାରିକ ଦିଗ, ପ୍ରୟୋଗ ବିଧି, ଧ୍ୱନିତତ୍ତ୍ୱ ଓ ଲିଖନ ଶୈଳୀରେ ଉଲ୍ଲେଖଯୋଗ୍ୟ କାର୍ଯ୍ୟ ହୋଇ ନାହିଁ । ବ୍ୟାକରଣ ରଚନା କରିବା ପାଇଁ ପ୍ରତିଶ୍ରୁତି ଦିଆଯାଇଥିଲେ ମଧ୍ୟ ସଂସ୍କୃତ ବ୍ୟାକରଣକୁ ପୂର୍ବ ପରି ଅନୁସରଣ କରାଯାଉଛି ଏବଂ ଦେଶଜ ଶବ୍ଦ ସମ୍ଭାରର ବ୍ୟବହାରିକ ବିଧି ନିର୍ଣ୍ଣୟ କରାଯାଇ ନାହିଁ । ବିଜ୍ଞାନ ଓ ପ୍ରଯୁକ୍ତି ସହିତ ଖାପ୍ ଖୁଆଇ ଲିପି ସଂସ୍କାର କରିବା ଆଉ ଏକ କାମ । ଭାଷା ଯଦି କମ୍ପ୍ୟୁଟର ଉପଯୋଗୀ ନ ହୁଏ ତେବେ ଏହାର ଉପଯୋଗ ସୀମିତ ହେବାକୁ ବାଧ୍ୟ ।

ଆମ ସାହିତ୍ୟରେ ନୂତନ ପ୍ରବାହ ଦେଖାଯାଉଛି । କଥା ସାହିତ୍ୟ, କବିତା ଓ ନାଟକ ମଧ୍ୟରେ ସାହିତ୍ୟ ଆଉ ଆବଦ୍ଧ ହୋଇ ରହି ନାହିଁ । ସାଧାରଣ ସାହିତ୍ୟ ଭିତରକୁ ବିଜ୍ଞାନ, ପ୍ରଯୁକ୍ତି, ସ୍ଥାପତ୍ୟ, ଜ୍ଞାନକୌଶଳ, ସୂଚନା ବିଦ୍ୟା ଇତ୍ୟାଦି ପ୍ରବେଶ କରିବା ଫଳରେ ଓଡ଼ିଆ ସାହିତ୍ୟର ଅଭାବ ଘୁଞ୍ଚି ଯାଉଛି । ଏ ସବୁ ବିଷୟରେ କାର୍ଯ୍ୟ କରିବା ସକାଶେ ଆହୁରି ବହୁତ କାମ ବାକି ଥିଲେ ମଧ୍ୟ ଆରମ୍ଭରେ ନୂତନ ଦିଗନ୍ତ ଉଦ୍‌ଭାସିତ ହେଉଛି । ରୂପ ଚର୍ଚ୍ଚା, ସ୍ୱାସ୍ଥ୍ୟ ଶିକ୍ଷା, କଳା ଓ ସ୍ଥାପତ୍ୟ, ରନ୍ଧନ, ଗୃହସଜ୍ଜା, ସଂଗୀତ ଓ ନୃତ୍ୟ, କମ୍ପ୍ୟୁଟର ବିଜ୍ଞାନ ଓ ଗୃହ ନିର୍ମାଣ ଇତ୍ୟାଦି ବିଷୟରେ ଓଡ଼ିଆ ଭାଷାରେ

ଉପାଦେୟ ପୁସ୍ତକ ଲେଖା ଯାଉଛି । ଏ ସବୁ ବିଷୟରେ ଥିବା ସାହିତ୍ୟ ଯେତିକି ପ୍ରସାରିତ ହେବ ଏବଂ ନୂତନ ଜ୍ଞାନ ପାଠକର ବୋଧଗମ୍ୟ ଭାଷାରେ ଯେତିକି ସାବଲୀଳ ଭାବେ ପ୍ରକାଶିତ ହେବ, ସାହିତ୍ୟ ସେତିକି ସମୃଦ୍ଧ ଓ ସର୍ଜନାତ୍ମକ ହେବ ।

ଭୁବନେଶ୍ୱର ପୁସ୍ତକ ମେଳା କେବଳ ବହି ପଢ଼ିବାର ଆଗ୍ରହ ସୃଷ୍ଟି କରି ନାହିଁ ଏହା ସହିତ ଲକ୍ଷ ଲକ୍ଷ ପାଠକ ସୃଷ୍ଟି କରିଛି । ବହିର ବର୍ଣ୍ଣାଢ୍ୟ ଜଗତ ଦେଖିଲେ ମନ ପ୍ରାଣ ପୁଲକିତ ହୁଏ ଏବଂ ସାହିତ୍ୟ ମାଧ୍ୟମରେ ଜ୍ଞାନ ଯେ ସାର୍ବଜନୀନ ଓ ସର୍ବକାଳୀନ ହେଉଛି, ଏଇ ଉପଲବ୍ଧି ବିସ୍ତାର ଲାଭ କରୁଛି । ପାଠକର ଚାହିଦା ପୂରଣ କରିବା ପାଇଁ ଗୁରୁତ୍ୱ ଦେବାକୁ ପଡ଼ିବ । ସେ କ'ଣ ପଢ଼ିବ ତାହା ଲେଖକ ସ୍ଥିର ନକରି ପାଠକ କ'ଣ ଚାହେଁ ସେହିପରି ସାହିତ୍ୟ ସୃଷ୍ଟି କରିବାକୁ ହେବ । ପାଠକର ରୁଚି ଓ ମୂଲ୍ୟବୋଧ ପ୍ରତି ସମ୍ମାନ ରଖି ଲେଖକ ନିଜର ମୌଳିକ କୃତିତ୍ୱ ପ୍ରଦର୍ଶନ କରିବ । 'ବଜାର ଶକ୍ତି' ଦ୍ୱାରା ସାହିତ୍ୟ ଓ ସଂସ୍କୃତି ଯେପରି ନିୟନ୍ତ୍ରିତ ନହୁଏ ତାହା ନିର୍ଣ୍ଣୟ କରିବାର ବେଳ ଆସିଛି । ସାହିତ୍ୟ ସୃଷ୍ଟି ହେବା ଦିନୁ ଏହା ଉର୍ଦ୍ଧ୍ୱମୁଖୀ ଚେତନାର ବାହକ ରୂପେ କାର୍ଯ୍ୟ କରି ଆସୁଛି । ବିଭିନ୍ନ ବାଦକୁ ନେଇ ବିବାଦ କରିବା କ୍ଷେତ୍ର ସାହିତ୍ୟ ନୁହେଁ, କିନ୍ତୁ ସମସ୍ତ 'ବାଦ' ଓ 'ତତ୍ତ୍ୱ'ର ତୁଳନାତ୍ମକ ସମୀକ୍ଷା ସାହିତ୍ୟରେ ଅଗ୍ରାଧିକାର ଦାବି କରେ । ନୋବେଲ୍ ପୁରସ୍କାର ବିଜେତା ସାର୍ ବିଦ୍ୟାଧର ନଇପଲ କହିଛନ୍ତି ଯେ, ଯେଉଁ ସାହିତ୍ୟରେ ଭଲ ସମାଲୋଚନା ସାହିତ୍ୟ ନାହିଁ ସେଠାରେ ଉଚ୍ଚକୋଟିର ସାହିତ୍ୟ ରଚନା କରି ହୁଏ ନାହିଁ । ଆମ ସାହିତ୍ୟର ପ୍ରବନ୍ଧ ଓ ତୁଳନାତ୍ମକ ବିଶ୍ଳେଷଣ ଦିଗଟି ଏକାନ୍ତ ଦୁର୍ବଳ । ତେଣୁ ଧୂଆମୂଳା ଓ ଅଧୁଆମୂଳା ସମାନ ଆଦର ପାଇ ଯାଉଛନ୍ତି । ଏଇ ଧାରା ବନ୍ଦ କରିବା ପାଇଁ ସୁରେନ୍ଦ୍ର ମହାନ୍ତି, କୃଷ୍ଣ ଚନ୍ଦ୍ର ପାଣିଗ୍ରାହୀ ପ୍ରଭୃତି ଉଦ୍ୟମ କରିଥିଲେ । ଅଧ୍ୟୟନ ଓ ଅଧ୍ୟବସାୟ ବିନା ଏହି କାମ ହୋଇପାରିବ ନାହିଁ ।

ଏସବୁ ଅଭାବ ସତ୍ତ୍ୱେ ଓଡ଼ିଆ ସାହିତ୍ୟରେ ମଣିଷର ସ୍ୱର ସ୍ପଷ୍ଟ ଏବଂ ଅର୍ଥପୂର୍ଣ୍ଣ ଅଟେ । ଭାଷାର ନୂତନ ପ୍ରୟୋଗରେ ସଚ୍ଚି ରାଉତରାୟ, ଗୁରୁ ପ୍ରସାଦ ମହାନ୍ତି ଯେଉଁ ଚମତ୍କାରିତା ପ୍ରଦର୍ଶନ କରିଛନ୍ତି ତାହା ସେମାନଙ୍କ ଠାରେ ଅଟକି ନରହି ରିଲେ ରେସ୍‌ର ମଶାଲ ପରି ଯେପରି ଆଗକୁ ଯାଏ ତାହା କରିବା କାମ ଲେଖକମାନଙ୍କର । ସେଇ ପ୍ରତିଯୋଗିତାରେ କିଏ ସଫଳ ହେବ ତାହା ସେତିକି ବଡ଼ କଥା ନୁହେଁ, ସେଥିରେ ଯୋଗଦେବା ହିଁ ତା'ଠାରୁ ବଡ଼ କଥା । ଏକବିଂଶ ଶତାବ୍ଦୀର ଓଡ଼ିଆ ଭାଷା ବିଂଶ ଶତାବ୍ଦୀର ଓଡ଼ିଆ ଭାଷା ଠାରୁ ଯେ ଅନେକ ବେଶୀ ଶକ୍ତିଶାଳୀ, ସୃଜନଶୀଳ ଏବଂ ସାର୍ବଜନୀନ୍ ହେବ ଏଥିରେ ଆଉ ସନ୍ଦେହ ନାହିଁ । ତେଣୁ ଓଡ଼ିଆ ଭାଷାକୁ ଶକ୍ତିଶାଳୀ ଓ ମହାନ କରିବା ପାଇଁ ଯେଉଁମାନେ ବିଂଶ ଶତାବ୍ଦୀରେ ସ୍ୱପ୍ନ ଦେଖିଥିଲେ ସେମାନଙ୍କ ଉତ୍ତରାଧିକାରୀମାନଙ୍କ ଉପରେ ସେଇ ଅଧୁରା ସ୍ୱପ୍ନ ସାକାର କରିବାର ଦାୟିତ୍ୱ ରହିଛି । ଏଥିପାଇଁ ଅଂଗୀକାର, ନିଷ୍ଠା ଓ ଅଧ୍ୟବସାୟ ଏକାନ୍ତ ପ୍ରୟୋଜନ ।



# ବହି ବିକ୍ରିର କାର୍ଟୁନ ଏବଂ ଭୁବନେଶ୍ୱର ପୁସ୍ତକ ମେଳା

**ବିଭୂତି ପଟ୍ଟନାୟକ**

ଗତ ଭୁବନେଶ୍ୱର ପୁସ୍ତକ ମେଳାରେ ମୋର ଜଣେ ପୂର୍ବତନ ଛାତ୍ରୀ ସହ ଦେଖାହେଲା । ସେ ତା'ର ଛଅବର୍ଷର ପୁଅ ସହିତ ମେଳା ବୁଲି ଦେଖୁଥିଲା । ମୁଁ ତାକୁ ପଚାରିଲି - ମେଳାରୁ କି କି ବହି କିଣିଲୁ ? ସେ ଟିକିଏ ସଂକୁଚିତ ହୋଇ ଉତ୍ତର ଦେଲା-

-ଶାଶୂଙ୍କ ପାଇଁ ଖଣ୍ଡେ କୋହିନୂର ପ୍ରେସ୍ ପାଞ୍ଜି କିଣିଛି- ଆଉ ପୁଅ ପାଇଁ ଆଠଖଣ୍ଡ ଇଂଲିସ୍ କମିକ୍ସ ।

- ଆଉ ତୋ ପାଇଁ ?

ଏଥର ସେ ନିଃସଂକୋଚରେ ଉତ୍ତର ଦେଲା - ସଂସାର ଜଞ୍ଜାଳ ଭିତରେ ବହି ପଢ଼ିବା ପାଇଁ ସମୟ କାହିଁ ? ଯାହା ଟିକିଏ କେବଳ ଟେଲିଭିଜନରେ ସିରିୟାଲ ଦେଖେ । ଆଉ ମୁଁ ଯେତେବେଳେ ସିରିୟାଲ୍ ଦେଖିବାକୁ ବସିବି- ପୁଅ ଆସି କାର୍ଟୁନ ଚାନେଲ୍ ଦେଖିବା ଲାଗି ଝଗଡ଼ା କରିବ - ପ୍ରତିଦିନ ଆମ ମା' ପୁଅଙ୍କ ଭିତରେ ଏଇଥି ଲାଗି ଗଣ୍ଡଗୋଳ - ସେଥିଲାଗି ତା' ପାଇଁ କିଛି କାର୍ଟୁନ କମିକ୍ସ ବହି କିଣି ନେଉଛି ।

ବହି ପଢ଼ିବା ବଦଳରେ ଟିଭି ସିରିୟାଲ୍ ଦେଖିବାରେ ଆଜିକାଲି ମଧ୍ୟବିତ୍ତ ଗୃହିଣୀ ସମୟ କଟାଉଥିବା କଥା ମତେ ଜଣାଥିଲା । କିନ୍ତୁ ଇଂଲିଶ ମିଡ଼ିୟମ ସ୍କୁଲରେ ପଢୁଥିବା ସେମାନଙ୍କ ପୁଅ-ଝିଅମାନେ ଯେ ମାଆମାନଙ୍କ ସହ କାର୍ଟୁନ ଧାରାବାହିକ ଦେଖିବା ପାଇଁ ଝଗଡ଼ା କରନ୍ତି; ସେମାନଙ୍କୁ ଏଥିପାଇଁ ବାପ ମାଆମାନେ ଇଂଲିସ୍ କମିକ୍ସ ବହି କିଣି ଲାଞ୍ଚ ଦିଅନ୍ତି; ଏକଥା ସେଦିନ ମୋର ପୂର୍ବତନ ଛାତ୍ରୀ ସହ କଥାବାର୍ତ୍ତାରୁ ମୁଁ ଜାଣିଗଲି ।

ଆମେ ଯେଉଁମାନେ କଥା ପ୍ରସଙ୍ଗରେ ୟୁରୋପ, ଆମେରିକାର ଉଦାହରଣ ଦେଇ ଆତ୍ମସନ୍ତୋଷ ପାଇଁ କହିଥାଉ ଯେ, ଇଲେକ୍‌ଟ୍ରୋନିକ୍ସ ଗଣମାଧ୍ୟମ, ମୁଦ୍ରଣ ଗଣମାଧ୍ୟମର ସ୍ଥାନ ନେଇପାରିବ ନାହିଁ; ଯେଉଁ ନିରକ୍ଷର, ଅର୍ଦ୍ଧଶିକ୍ଷିତ ଲୋକେ ବହି ପଢ଼ି ତା'ର ସ୍ୱାଦ ଗ୍ରହଣ କରିପାରିବେ ନାହିଁ, ସେହିମାନେ ହିଁ ବହି ପଢ଼ିବା ବଦଳରେ ଟେଲିଭିଜନ ଓ ଟେଲିଭିଜନ ସିରିୟାଲ୍ ଦେଖନ୍ତି - ସେଦିନ ସେ ଧାରଣା ମୋର ବାତିଲ ହୋଇଯାଇଥିଲା ।

ଯେଉଁ ଶିକ୍ଷିତ ମଧ୍ୟବିତ୍ତ ଆମୋଦ-ପ୍ରମୋଦର ଆନନ୍ଦ ଲାଭ କରିବା ପାଇଁ ଦିନେ ଗଳ୍ପ-ଉପନ୍ୟାସ, କାବ୍ୟ-ନାଟକ ପଢୁଥିଲେ, ସେମାନଙ୍କ ମଧ୍ୟରୁ ଗୋଟିଏ ବଡ଼ ଅଂଶ ନିଃସନ୍ଦେହରେ ମୋ ପୂର୍ବତନ ଛାତ୍ରୀ ଭଳି ପିଲାମାନଙ୍କୁ କମିକ୍ସ ଧରାଇ ଦେଇ ନିଜେ ଟେଲିଭିଜନରେ ହିନ୍ଦୀ ସିରିୟାଲ୍ ଏବଂ ଭିଡ଼ିଓ କ୍ୟାସେଟ୍‌ରେ ସିନେମା ଦେଖୁଛନ୍ତି; କିନ୍ତୁ ଯେଉଁମାନେ ଜ୍ଞାନ ଆହରଣ ପାଇଁ ସ୍କୁଲ କଲେଜ ପରୀକ୍ଷାରେ ପାସ୍ କରିବାକୁ ହେଉ ଅଥବା ଚାକିରି ପାଇବା ଲାଗି ପ୍ରତିଦ୍ୱନ୍ଦ୍ୱିତାମୂଳକ ପରୀକ୍ଷାରେ କୃତିତ୍ୱ ଅର୍ଜନ କରିବା ଉଦ୍ଦେଶ୍ୟରେ ହେଉ; ବହି ଉପରେ ସେମାନଙ୍କୁ ନିର୍ଭର କରିବାକୁ ହେଉଛି । ସେଥିପାଇଁ ସାଧାରଣ ସାହିତ୍ୟର ପାଠକ ସଂଖ୍ୟା ବୃଦ୍ଧି ପାଇନଥିଲେ ସୁଦ୍ଧା ପାଠ୍ୟ ପୁସ୍ତକ କିମ୍ବା ପ୍ରତିଦ୍ୱନ୍ଦ୍ୱିତାମୂଳକ ପରୀକ୍ଷା ଲାଗି ପ୍ରୟୋଜନୀୟ ବହିର ଚାହିଦା ନିଃସନ୍ଦେହରେ ବଢ଼ିବାରେ ଲାଗିଛି । ପୁଣି ବିଜ୍ଞାନ, ମେଡ଼ିକାଲ, ଇଞ୍ଜିନିଅରିଂ ଶିକ୍ଷା ଇଂରେଜୀ ଭାଷା ମାଧ୍ୟମରେ ଦିଆଯାଉଥିବା ଯୋଗୁଁ ଏବଂ ସର୍ବଭାରତୀୟ ସ୍ତରରେ ଇଂରେଜୀ କିମ୍ବା ହିନ୍ଦୀ ଭାଷା ମାଧ୍ୟମରେ ଚାକିରି ଲାଗି ପ୍ରତିଦ୍ୱନ୍ଦ୍ୱିତାମୂଳକ ପରୀକ୍ଷା ହେଉଥିବା ଦୃଷ୍ଟିରୁ ଓଡ଼ିଆ ପିଲାମାନେ ଇଂରେଜୀ ଭାଷାରେ ପାଠ୍ୟପୁସ୍ତକ କ୍ରୟ କରନ୍ତି । ଫଳରେ ଓଡ଼ିଆ ସାହିତ୍ୟ ନୁହେଁ, ଓଡ଼ିଆ ଭାଷା ମଧ୍ୟ ସଂକଟର ସମ୍ମୁଖୀନ ହୋଇଛି । ଆଶଙ୍କା ପ୍ରକାଶ ପାଉଛି ଯଦି ଓଡ଼ିଆ ବହିର ପ୍ରଚାର ପ୍ରସାର ଆଶାନୁରୂପ ଅଗ୍ରଗତି ନ କରେ, ତା' ହେଲେ ଆଉ ଦୁଇ ତିନି ଦଶକ ପରେ ଓଡ଼ିଆ ଭାଷା କେବଳ କଥିତ ଭାଷା ହୋଇ ରହିଯିବ; ପଠିତ ଭାଷାର ମର୍ଯ୍ୟାଦା ହରାଇ ବସିବ ।

ଏଭଳି ଆଶଙ୍କା ଯେ ଅମୂଳକ ଏ ବିଷୟରେ ମୋର ସନ୍ଦେହ ନାହିଁ । କାରଣ ଜଣେ ପାଠକ ଖଣ୍ଡେ ଗଳ୍ପ-ଉପନ୍ୟାସ କିମ୍ବା କାବ୍ୟ, ନାଟକ ମନେ ମନେ ପଢ଼ି ଯେଉଁ ସାରସ୍ୱତ ଆନନ୍ଦ ଲାଭ କରେ, ସିନେମା ଟେଲିଭିଜନର ଚଳଚ୍ଚିତ୍ର କିମ୍ବା ଶାଶୂ-ବୋହୂ ଧାରାବାହିକରୁ କେବେହେଲେ ପାଇପାରିବ ନାହିଁ । ବୈଦ୍ୟୁତିକ ଗଣମାଧ୍ୟମରେ ସମ୍ପ୍ରସାରିତ ଧର୍ମୀୟ ବା ସାମାଜିକ

ଧାରାବାହିକ ହେଉ ଅଥବା ଚଳଚ୍ଚିତ୍ରରେ ପ୍ରଦର୍ଶିତ ରଙ୍ଗିନ ବର୍ଣ୍ଣାଢ୍ୟ କାହାଣୀ ହେଉ - ତାହା ଦର୍ଶକଙ୍କୁ ସାମୟିକ ସ୍ଥୂଳ ଆନନ୍ଦ ଦେଇଥାଏ । ଗଳ୍ପ- ଉପନ୍ୟାସର ସୂକ୍ଷ୍ମ ସାରସ୍ୱତ ଆନନ୍ଦ ସେଥିରେ ମିଳେ ନାହିଁ । ସେଥିପାଇଁ ଆମ ସମୟର ବିଶିଷ୍ଟ କବି ଟି.ଏସ୍. ଇଲିୟଟ୍ କହିଥିଲେ - ସାହିତ୍ୟ ହିଁ କେବଳ ସୁପରିୟର ଏଣ୍ଟରଟେନ୍‌ମେଣ୍ଟ ବା ଉତ୍କୃଷ୍ଟ, ଚିରନ୍ତନ ଆନନ୍ଦ ଦେଇପାରେ । 'ମାଟିର ମଣିଷ' କିମ୍ବା 'ବଧୂ ନିରୂପମା' ଉପନ୍ୟାସ ପାଠକକୁ ଯେଉଁ ଆନନ୍ଦ ଦେଇପାରିଛି ଏବଂ ସେମାନଙ୍କ ଚିନ୍ତା ଭାବନାକୁ ପ୍ରଭାବିତ କରିପାରିଛି; ଏହି ଦୁଇ ଉପନ୍ୟାସର ଚଳଚ୍ଚିତ୍ର କ'ଣ ଦର୍ଶକମାନଙ୍କୁ ସେଇ ଆନନ୍ଦ, ତୃପ୍ତି ଦେଇପାରିଛି ?

୧୯୯୯ ମସିହା ଜାତୀୟ ପାଠକୀୟ ସର୍ବେକ୍ଷଣ ବିବରଣୀ (National Readership Survey-99) ଅନୁସାରେ ଭାରତବର୍ଷରେ ପାଖାପାଖି ସାତକୋଟି ଲୋକଙ୍କ ଘରେ ଟେଲିଭିଜନ ଦେଖିବାର ସୁଯୋଗ ରହିଛି । ଏହି ସର୍ବେକ୍ଷଣ ଅନୁଯାୟୀ ଗୋଟିଏ ସପ୍ତାହରେ ସାଧାରଣତଃ ସତେଇଶି କୋଟି ଷାଠିଏ ଲକ୍ଷ ଲୋକ ଟେଲିଭିଜନ ଦେଖନ୍ତି । ପରବର୍ତ୍ତୀ ଦୁଇବର୍ଷ ମଧ୍ୟରେ ଆହୁରି ପଚାଶ ଷାଠିଏ ଲକ୍ଷ ଟେଲିଭିଜନ ସେଟ୍ ଏବଂ ଏକ କୋଟି ଦର୍ଶକ ସମ୍ଭବତଃ ବୃଦ୍ଧି ପାଇଥିବ । କିନ୍ତୁ ଏହି ଟେଲିଭିଜନ ଦର୍ଶକଙ୍କ ସଂଖ୍ୟା ମୋଟାମୋଟି ଆମ ଦେଶର ସମୁଦାୟ ଲୋକସଂଖ୍ୟାର ଏକ-ଚତୁର୍ଥାଂଶରୁ କିଛି ଅଧିକ । ଅବଶିଷ୍ଟ ତିନି-ଚତୁର୍ଥାଂଶ ଲୋକମାନଙ୍କର ଟେଲିଭିଜନ ଦେଖିବାର ସୁଯୋଗ ନାହିଁ । ୨୦୦୧ ମସିହା ଜନଗଣନା ରିପୋର୍ଟ ଅନୁସାରେ ଭାରତ ବର୍ଷରେ ଲେଖି ପଢ଼ି ଜାଣିଥିବା ଲୋକ ସଂଖ୍ୟା ପଈଷଠି ଦଶମିକ ଅଡ଼ତିରିଶି ଶତାଂଶ । ଅର୍ଥାତ୍ ସତୁରି ବା ବାଅସ୍ତରୀ କୋଟି ଟେଲିଭିଜନ ଦେଖିବାକୁ ସୁଯୋଗ ପାଉନଥିବା ଲୋକଙ୍କ ଭିତରୁ ବୟାଳିଶି, ତେୟାଳିଶି କୋଟି ଲୋକଙ୍କର ବହି ପଢ଼ି ପାରିବାର ସମ୍ଭାବନା ରହିଛି । ଯେଉଁ ଅଠେଇଶି, ଅଣତିରିଶି କୋଟି ଲୋକ ଟେଲିଭିଜନ ଦେଖନ୍ତି, ସେମାନଙ୍କ ଭିତରୁ ଗୋଟିଏ ବଡ଼ ଅଂଶ ପାଠ୍ୟ ପୁସ୍ତକ ଛଡ଼ା ସାଧାରଣ ସାହିତ୍ୟ ବହି ମଧ୍ୟ କିଣନ୍ତି । ଟେଲିଭିଜନ ଦେଖିପାରୁ ନଥିବା ସାକ୍ଷର ଲୋକମାନଙ୍କ ଅପେକ୍ଷା ସାତ, ଆଠ କୋଟି ଟେଲିଭିଜନ ରଖିଥିବା ଲୋକଙ୍କର ବହି କିଣିପାରିବାର ସାମର୍ଥ୍ୟ ମଧ୍ୟ ଅଧିକ । ତେଣୁ ଆମ ଦେଶରେ ବହି ବିକ୍ରି ପାଇଁ ଯେ ଏକ ବିସ୍ତୃତ ବଜାର ରହିଛି, ଏଥିରେ ସନ୍ଦେହ ନାହିଁ ।

ଓଡ଼ିଶାରେ ସାକ୍ଷରତା ହାର ୨୦୦୧ ଜନଗଣନା ଅନୁସାରେ ତେଷଠି ଦଶମିକ ଏକଷଠି ଶତାଂଶ । ଅର୍ଥାତ୍ ସର୍ବଭାରତୀୟ ସାକ୍ଷରତା ହାର ଠାରୁ ଏହା ମାତ୍ର ଦୁଇ ଶତାଂଶ କମ୍ । ଆମ ରାଜ୍ୟରେ ଅନୁସୂଚିତ ଜାତି ଓ ଉପଜାତି ଲୋକଙ୍କ ସଂଖ୍ୟା ପାଖାପାଖି ପଇଁଚାଳିଶି ଶତାଂଶ । ଯେହେତୁ ଏମାନଙ୍କ ମଧ୍ୟରୁ ଶତକଡ଼ା ଷାଠିଏ, ସତୁରୀ ଶତାଂଶ ଲୋକ ନିରକ୍ଷର ଏବଂ ଯେଉଁମାନଙ୍କର ଲେଖି ପଢ଼ିବାର ସାମର୍ଥ୍ୟ ଅଛି ସେମାନଙ୍କ ମଧ୍ୟରୁ ଅଧିକାଂଶଙ୍କ ବହି କିଣି ପଢ଼ିବାର ଆର୍ଥିକ ସ୍ୱଚ୍ଛଳ ନାହିଁ, ସେ ଦୃଷ୍ଟିରୁ ଆମ ରାଜ୍ୟରେ ବହି କିଣି ପଢ଼ିବା ଲୋକଙ୍କ ସଂଖ୍ୟା ପଚାଶ ଷାଠିଏ ଲକ୍ଷ ମଧ୍ୟରେ ସୀମିତ । କେବଳ ଏମାନଙ୍କ ମଧ୍ୟରୁ ଦଶ ଶତାଂଶ ଅର୍ଥାତ୍ ପାଞ୍ଚ ଛଅ ଲକ୍ଷ ଲୋକ ଯଦି ବହି କିଣି ପଢ଼ନ୍ତେ, ତାହାହେଲେ ଖଣ୍ଡେ ଭଲ ବହି ବର୍ଷକ ଭିତରେ ଏକହଜାର କପି ବିକ୍ରି ହେବାରେ ବିଶେଷ କିଛି ଅସୁବିଧା ହୁଅନ୍ତା ନାହିଁ । କିନ୍ତୁ ଏହି ପାଞ୍ଚ ଛଅ ଲକ୍ଷ ପାଠକ, ପାଠିକାଙ୍କ ପାଖରେ ବହି ପହଞ୍ଚାଇ ପାରିବାରେ ପୁସ୍ତକ ପ୍ରକାଶକମାନେ ସକ୍ଷମ ହେଉନଥିବା ଯୋଗୁଁ ଆଧୁନିକ କାବ୍ୟ କବିତା କିମ୍ବା ଗବେଷଣାଧର୍ମୀ ପ୍ରବନ୍ଧ ନିବନ୍ଧ (ଯାହା ଜ୍ଞାତସାରରେ ଅଳ୍ପ ପାଠକମାନଙ୍କ ଲାଗି ରଚିତ ହୋଇଥାଏ) କଥା ଛାଡ଼ନ୍ତୁ, ଗଳ୍ପ, ଉପନ୍ୟାସ, ନାଟକ, ଇତିହାସ, ଜୀବନୀ, ଆତ୍ମଜୀବନୀ କିମ୍ବା ପରିବାରର ପ୍ରୟୋଜନୀୟ ତଥ୍ୟ ସମ୍ବଳିତ ପୁସ୍ତକ ମଧ୍ୟ ଏକ ହଜାର କପି ବିକ୍ରି କରିବା ଲାଗି ପାଞ୍ଚ ଦଶବର୍ଷ ଲାଗି ଯାଇଛି ବୋଲି ପ୍ରକାଶକମାନେ ଅଭିଯୋଗ କରୁଛନ୍ତି । ଏକହଜାର ସ୍ଥଳେ ତିନିଶହ, ପାଞ୍ଚଶହ, କପି ଛାପୁଛନ୍ତି । ଅଳ୍ପ ସଂଖ୍ୟକ କପି ଛାପିବା ହେତୁ ବହିର ମୂଲ୍ୟ ଅତ୍ୟଧିକ ବୃଦ୍ଧି ପାଉଛି । ଫଳରେ ଏତେ ଦାମ୍ ଦେଇ ବହି କିଣିବା ଦରିଦ୍ର ମଧ୍ୟବିତ୍ତ ପାଠକ ପକ୍ଷରେ ସମ୍ଭବ ହେଉ ନ ଥିବାରୁ ପ୍ରକାଶକମାନେ ରାମମୋହନ ଫାଉଣ୍ଡେସନ୍, ବ୍ଲାକ୍‌ବୋର୍ଡ଼ ଅପରେସନ୍ ଭଳି ସରକାରୀ ବହି ଖର୍ଦ୍ଦି ଉପରେ ନିର୍ଭର କରି ବସି ରହୁଛନ୍ତି ।

କିନ୍ତୁ କୌଣସି ଭାଷାର ସାହିତ୍ୟ ସରକାରୀ ଅନୁଦାନ ଉପରେ ନିର୍ଭର କରି ବଞ୍ଚିପାରେ ନାହିଁ । ଏହାଦ୍ୱାରା ପ୍ରକାଶକମାନେ ବଞ୍ଚି ରହି ପାରନ୍ତି; ସାହିତ୍ୟ ବଞ୍ଚେ ନାହିଁ । ସାହିତ୍ୟ ବଞ୍ଚେ ପାଠକମାନଙ୍କ ପୁସ୍ତକ ପଠନ ମଧ୍ୟରେ ।

ଓଡ଼ିଆ ପୁସ୍ତକ ବିକ୍ରି ନ ହେବାର ବଡ଼ କାରଣ ପାଠକମାନଙ୍କ ଅଭିରୁଚି ଏବଂ ଆବଶ୍ୟକତାକୁ ଆଖି ଆଗରେ

ରଖି ବହି ଛପା ହେଉ ନାହିଁ । ବହିର ଭଲ ମନ୍ଦ ବିଚାର ଦାୟିତ୍ୱ ଲେଖକ ଏବଂ ପ୍ରକାଶକମାନେ ହିଁ ନିଜ ଉପରକୁ ଉଠାଇ ନେଉଛନ୍ତି । ତେଣୁ ସେଭଳି ବହି ପାଠକମାନେ କିଣିବା ପାଇଁ ଆଗ୍ରହୀ ନୁହନ୍ତି । ସବୁ ସାହିତ୍ୟରେ କିଛି କିଛି ବହି ଅଛି ଯାହାର ପାଠକ ସଂଖ୍ୟା ସବୁ ଯୁଗରେ ସ୍ୱଳ୍ପ । ସେ ବହି ପାଇଁ ପାଠକମାନଙ୍କ ରୁଚି ସୃଷ୍ଟି ପାଇଁ ପ୍ରକାଶକ ଏବଂ ପୁସ୍ତକ ବିକ୍ରେତାମାନଙ୍କୁ ବିଜ୍ଞାପନ ଜରିଆରେ ପ୍ରଚାର କରିବା ପ୍ରୟୋଜନ । ଆମର ପ୍ରକାଶକ ଏବଂ ଲେଖକମାନଙ୍କର ଧାରଣା ଯେ ଅକ୍ଷର ହେଉଛି ବ୍ରହ୍ମ । ସାହିତ୍ୟ ହେଉଛି ସାରସ୍ୱତ ଶିଳ୍ପ । ପ୍ରତି ପାଠକ ତାକୁ ବୁଝୁ କି ନ ବୁଝୁ କିଣିନେଇ ପୂଜା କରିବା ଉଚିତ । ଯଦି ପାଠକ ନ କିଣିଲା, ତାହାହେଲେ ସରକାର ତାକୁ କିଣିନେଇ ପାଠାଗାରମାନଙ୍କରେ ସଜାଇ ରଖିବା ଉଚିତ; ପାଠକ ତାହା ପଢୁ କି ନପଢୁ ।

ପ୍ରକାଶକ, ଖବରକାଗଜ ଓ ଟେଲିଭିଜନ ଭଳି ମୁଦ୍ରଣ ଓ ବୈଦ୍ୟୁତିକ ଗଣମାଧ୍ୟମର ବିଜ୍ଞାପନ ହାର ଯଥେଷ୍ଟ ଅଧିକ ହୋଇଥିବା ଯୋଗୁଁ ସୀମିତ ସମୟ ମଧ୍ୟରେ ବିଜ୍ଞାପନ ଦେବା ସମ୍ଭବ ନୁହେଁ ବୋଲି ଯୁକ୍ତି ଉପସ୍ଥାପନ କରନ୍ତି । କିନ୍ତୁ ସେମାନେ ଭୁଲିଯାଆନ୍ତି ଯେ, ବହି ମଧ୍ୟ ଅନ୍ୟ ପଦାର୍ଥ ଭଳି ଏକ ପଣ୍ୟଦ୍ରବ୍ୟ । ପଣ୍ୟର ପ୍ରସାର ପାଇଁ ଏ ଯୁଗରେ ବିଜ୍ଞାପନ ଏକାନ୍ତ ଜରୁରୀ । କୋଡ଼ିଏ ବର୍ଷ ତଳେ ବହି ବନ୍ଧେଇ କଲେ ବହିର ଦାମ୍ ବଢ଼ିଯିବ ବୋଲି ପ୍ରକାଶକମାନେ ଅବନ୍ଧା ବହି ଛାପୁଥିଲେ । ବର୍ତ୍ତମାନ ବନ୍ଧେଇ ବାବଦ ଦଶଟଙ୍କା ଅଧିକ ମୂଲ୍ୟ ରଖିଲେ ପାଠକ ବହି କିଣୁଛନ୍ତି । ବିଜ୍ଞାପନ ବାବଦ ଦୁଇଟଙ୍କା ତିନିଟଙ୍କା ରଖିଲେ ବର୍ଦ୍ଧିତ ହାରରେ ପାଠକ ବହି କିଣିବେ ନାହିଁ କାହିଁକି ? ପେଙ୍ଗୁଇନ୍ ପେପର ବ୍ୟାକ୍ ଚାରି ପାଞ୍ଚ ଟଙ୍କାରେ ମିଳିଲାବେଳେ ଯେତିକି ବହି ବିକ୍ରି ହେଉଥିଲା, ସେହି ବହି ଏକଶହ ପଞ୍ଚାନବେ ଟଙ୍କାରେ ଆଜି ମଧ୍ୟ ସେତିକି ବହି ବିକ୍ରି ହେଉଛି- କାରଣ ଏହି ଶହେ ପଞ୍ଚାନବେ ଟଙ୍କାରେ ବହିର ବିଜ୍ଞାପନ ଖର୍ଚ୍ଚ ବହି ପିଛା ପଚିଶି ଟଙ୍କା ମିଶାଯାଇଛି ।

ବହିକୁ ପାଠକ ପାଖରେ ପହଞ୍ଚାଇ ଦେବାର ବର୍ତ୍ତମାନ ଆଉ ଗୋଟିଏ ଉତ୍କୃଷ୍ଟ ଉପାୟ ହେଉଛି ବହି ମେଳା । ଫ୍ରାଙ୍କଫୁଟ୍ ବିଶ୍ୱ ବହିମେଳା ଠାରୁ ଆରମ୍ଭ କରି କୋଲକାତା ପୁସ୍ତକମେଳା ପର୍ଯ୍ୟନ୍ତ ବହିମେଳା ମାଧ୍ୟମରେ ବହି ସହିତ ପାଠକର ନିକଟ ସଂପର୍କ ସ୍ଥାପନ କରାଯାଏ । ଅନ୍ୟତ୍ର ପୁସ୍ତକ ପ୍ରକାଶକ-ବିକ୍ରେତା ଏବଂ ବିତରକମାନଙ୍କ ଉଦ୍ୟମରେ ବହିମେଳା ହୁଏ । ବହି ବିକ୍ରିର ସୁଯୋଗ କରିଦେବା ପାଇଁ ଆମେ ଓଡ଼ିଶାର କେତେଜଣ ଲେଖକ ଗତ ଅଠରବର୍ଷ ଧରି ଭୁବନେଶ୍ୱର ପୁସ୍ତକମେଳା ଆୟୋଜନ କରି ଆସୁଛୁ । ପୁସ୍ତକ ପ୍ରକାଶକମାନଙ୍କ ସହଯୋଗରେ ଏହି ପୁସ୍ତକମେଳା ଓଡ଼ିଶାର ସର୍ବବୃହତ୍ ପୁସ୍ତକ ମେଳାରେ ପରିଣତ ହୋଇଛି ଏବଂ ବହି ବିକ୍ରି, ପାଠକ ସମାରୋହ ଦୃଷ୍ଟିରୁ କୋଲକାତା ବହି ମେଳା ପରେ ଏହା ଭାରତବର୍ଷର ଦ୍ୱିତୀୟ ବୃହତ୍ ବହିମେଳା ବୋଲି କୁହାଯାଉଛି । ପ୍ରତିବର୍ଷ ଫେବ୍ରୁଆରୀ ଛବିଶ ତାରିଖରୁ ଏହି ମେଳା ଆରମ୍ଭ ହୋଇ ମାର୍ଚ୍ଚ ସାତ ତାରିଖ ପର୍ଯ୍ୟନ୍ତ ଚାଲିଥାଏ । ଏହି ମେଳାରେ ପ୍ରଥମଥର ପାଇଁ ଓଡ଼ିଶାର ପ୍ରାୟ ସମସ୍ତ ପ୍ରକାଶକ ପୁସ୍ତକ ବିକ୍ରେତାଙ୍କ ବ୍ୟତୀତ ଓଡ଼ିଶା ବାହାରର ବହୁ ବିଶିଷ୍ଟ ପ୍ରକାଶକ ଓ ବିକ୍ରେତା ଯୋଗ ଦେଇଛନ୍ତି । ଏହି ମେଳା ଉପଲକ୍ଷେ ଗତବର୍ଷମାନଙ୍କ ଭଳି ବହୁ ନୂତନ ଓଡ଼ିଆ ପୁସ୍ତକ ମଧ୍ୟ ପ୍ରକାଶିତ ହେଉଛି । କେତୋଟି ସାହିତ୍ୟ ପତ୍ରିକା ମଧ୍ୟ ଏହି ମେଳା ଉପଲକ୍ଷେ ଆତ୍ମପ୍ରକାଶ କରୁଛି । ବାସ୍ତବରେ ଭୁବନେଶ୍ୱର ପୁସ୍ତକ ମେଳା ଓଡ଼ିଶାର ଏକ ଜାତୀୟ ସାଂସ୍କୃତିକ ମେଳାରେ ପରିଣତ ହେବାକୁ ଯାଉଛି । ବହି ଦେଖିବା, ବହି କିଣିବା, ବହି ପଢ଼ିବା- ଏହା ହିଁ ହେଉଛି ପୁସ୍ତକ ମେଳାର ମୂଳ ପ୍ରସଙ୍ଗ ।

କୋଲକାତା ବହିମେଳାରେ ବଙ୍ଗଳା ସାହିତ୍ୟର ବିଶିଷ୍ଟ ପ୍ରକାଶକ ମିତ୍ର ଘୋଷ ସଂସ୍ଥାର ସଂଚାଳକଙ୍କୁ ପ୍ରଶ୍ନ କରାଯାଇଥିଲା- ମେଳାର ମଣ୍ଡପ ନିର୍ମାଣ ଓ ଅନ୍ୟାନ୍ୟ ଆନୁଷଙ୍ଗିକ ଖର୍ଚ୍ଚ କ'ଣ ଆପଣଙ୍କ ମେଳାରେ ବିକ୍ରି ହେଉଥିବା ବହିରୁ ଉଠାଇ ନିଅନ୍ତି ? - ସେ ତା'ର ଉତ୍ତରରେ କହିଥିଲେ- ଯେତିକି ବହି ବିକ୍ରି ହୁଏ - ତା' ଠାରୁ ଅଧିକ ବହିର ବିଜ୍ଞାପନ ହୁଏ । ଯେଉଁ ପାଠକମାନେ ବହି ଦେଖି ଯାଇଥାନ୍ତି- ସେମାନେ ପରବର୍ତ୍ତୀ କାଳରେ ବହି କିଣନ୍ତି । ଫଳରେ ବର୍ଷସାରା ବହି ବିକ୍ରିରେ ମାନ୍ଦା ଅବସ୍ଥା ଆସେ ନାହିଁ । କୋଲକାତା ବହିମେଳାକୁ ଆସିବା ପ୍ରତି ଶିକ୍ଷିତ ବଙ୍ଗାଳୀର ସାମାଜିକ ବାଧବାଧକତା ସେମାନେ ସମସ୍ତେ ବହି କିଣନ୍ତି ନାହିଁ କିନ୍ତୁ ବହି ଦେଖି ସେଥିପ୍ରତି ଆକୃଷ୍ଟ ହୁଅନ୍ତି । ସେମାନେ ଭବିଷ୍ୟତର କ୍ରେତା । ଭୁବନେଶ୍ୱର ଏବଂ ରାଜଧାନୀ ଆଖପାଖ ଅଞ୍ଚଳର ପ୍ରତି ଶିକ୍ଷିତ ଓଡ଼ିଆ ଭୁବନେଶ୍ୱର ପୁସ୍ତକମେଳାକୁ ଆସିବା ନିଜର ସାମାଜିକ କର୍ତ୍ତବ୍ୟ ବୋଲି ଯଦି ମନେ କରନ୍ତେ, ତାହାଲେ ଓଡ଼ିଆ ଭାଷା ସାହିତ୍ୟକୁ ଆଚ୍ଛନ୍ନ କରିଥିବା ସଂକଟର କୁହୁଡ଼ି ଆପେ ଅପସାରିତ ହୋଇଯାଆନ୍ତା ।

# ବହି, ବହି ମେଳା ଓ ପାଠକ

## ବରେନ୍ଦ୍ର କୃଷ୍ଣ ଧଳ

କଥାରେ ଅଛି, ଶିକ୍ଷିତ ମଣିଷର ପରମ ବନ୍ଧୁ ହେଉଛି ପୁସ୍ତକ । ପୁସ୍ତକ ଭିତରେ ଲୁଚି ରହିଅଛି ସମଗ୍ର ବିଶ୍ୱର ଅକଳନ୍ତି ସୂଚନା ଓ ସମ୍ପଦ । ପୁସ୍ତକକୁ ନେଇ ଜିଜ୍ଞାସା ସବୁବେଳେ ସବୁ କାଳରେ ରହି ଆସିଛି । ଆଧୁନିକ ସମୟରେ ଯେତେବେଳେ ପୁସ୍ତକ ଛାପାଖାନାରୁ ଆତ୍ମ ପ୍ରକାଶ କଲା, ଯେତେବେଳେ ମଣିଷ ଆଧୁନିକ ଶିକ୍ଷା ଲାଭ କଲା ସେତେବେଳଠାରୁ ପୁସ୍ତକକୁ ପାଇବା ପାଇଁ ମନ ଭିତରେ ଉତ୍କଣ୍ଠା ସୃଷ୍ଟି ହେଲା । ବହିଦୋକାନର ଥାକ ଭିତରେ ଥିବା ପୁସ୍ତକ ମଣିଷର ଏହି ଆଗ୍ରହକୁ ଚରିତାର୍ଥ କରିପାରିଲା ନାହିଁ । ତାହାର ଫଳ ସ୍ୱରୂପ ଜନ୍ମ ନେଲା ପୁସ୍ତକ ମେଳା ।

ଉଣେଇଶି ଶହ ବାସ୍ତରୀ ମସିହାରେ ଦିଲ୍ଲୀଠାରେ ଜାତୀୟ ପୁସ୍ତକ ନ୍ୟାସ ଯାହାକୁ ସତରାଚର ଏନ୍.ବି.ଟି. (ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ) ବୋଲି କୁହାଯାଇଥାଏ, ଆରମ୍ଭ କରିଥିଲେ ବିଶ୍ୱ ପୁସ୍ତକ ମେଳା । ଏହି ମେଳାକୁ ସେତେବେଳେ କେହି ସେପରି ଗୁରୁତ୍ୱ ଦେଲେ ନାହିଁ । କାରଣ ସମସ୍ତେ ଭାବିଥିଲେ ବହି ମେଳା କ'ଣ ? ତା' ପରେ ପୁଣି ବିଶ୍ୱ ବହି ମେଳା । କିନ୍ତୁ ବିଶ୍ୱ ବହି ମେଳା ଯେତେବେଳେ ଦିଲ୍ଲୀରେ ଅନୁଷ୍ଠିତ ହେଲା ସେତେବେଳେ ସାଧାରଣ ଲୋକେ ବିଶେଷ କରି ଛାତ୍ର-ଶିକ୍ଷକ ଓ ବୁଦ୍ଧିଜୀବୀମାନେ କୌତୁହଳବଶତଃ ବହିମେଳା ବୁଲିବାକୁ ଗଲେ । ଅଧିକାଂଶ ଲୋକେ ବିସ୍ମିତ ହେଲେ ବହିର ପସରା ଦେଖି । ଏତେ ବହି ଅଛି ? କାହା ମନରେ ଠିକ୍ ପ୍ରତ୍ୟୟ ଆସୁନଥିଲା । ଲକ୍ଷ ଲକ୍ଷ ବହି ଦେଖିବା ପରେ ସାଧାରଣ ବୁଦ୍ଧିଜୀବୀ ମଣିଷ ଆକୃଷ୍ଟ ହେଲା ବହି ମେଳା ପାଇଁ । ଭାରତର ପ୍ରଥମ ରାଷ୍ଟ୍ରପତି ଡକ୍ଟର ରାଜେନ୍ଦ୍ର ପ୍ରସାଦ୍, ଉପରାଷ୍ଟ୍ରପତି ଡଃ ସର୍ବପଲ୍ଲୀ ରାଧାକ୍ରିଷ୍ଣନ, ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହର ଲାଲ ନେହେରୁ ସମସ୍ତେ ଥିଲେ ମହାନ୍ ପଣ୍ଡିତ । ସମସ୍ତଙ୍କର ବହି ପ୍ରତି ଥିଲା ଅସମ୍ଭବ ଦୁର୍ବଳତା । ଭାରତର ବହୁ ମନ୍ତ୍ରୀ ଥିଲେ ବିଖ୍ୟାତ ବୁଦ୍ଧିଜୀବୀ । ବିଶ୍ୱ ବହିମେଳା ପ୍ରଥମରୁ ହିଁ ସଫଳତା ଲାଭ କଲା । ପ୍ରତି ଦୁଇ ବର୍ଷରେ ଥରେ ଅନୁଷ୍ଠିତ ହୋଇ ଆସୁଛି ଏହି ବହି ମେଳା । ସରକାରୀ ସ୍ତରରେ ଏହି ମେଳା ଅନୁଷ୍ଠିତ ହେଉଥିଲେ ମଧ ବେସରକାରୀ ଭାବେ କେହି ଏକ ବହି ମେଳା ସଂଗଠିତ କରିବା ପାଇଁ ସାହସ କରି ପାରିଲେ ନାହିଁ । ଯେ କୌଣସି ପାଠୁଆ ଲୋକର ମୂଳ ଆବଶ୍ୟକତା ହେଉଛି ବହି । ସାଧାରଣ ବୁଦ୍ଧିଜୀବୀ ମଣିଷ ପାଇଁ ଖାଦ୍ୟ, ବସ୍ତ୍ର ଆଉ ବାସସ୍ଥାନ ଭଳି ବହି ହେଉଛି ଅନୁରୂପ ଏକ ମୌଳିକ ଆବଶ୍ୟକତା । କାରଣ ମଣିଷ ଜୀବନରେ ଅନେକ କିଛି ଜିଜ୍ଞାସାର ଉତ୍ତର ବହିରୁ ହିଁ ମିଳିଥାଏ । ଆଜି ପୃଥିବୀରେ ବିଜ୍ଞାନ ଯେତେ ଉନ୍ନତି କଲେ ମଧ ବହିର ବିକଳ୍ପ ନାହିଁ । ଇଲେକ୍‌ଟ୍ରୋନିକ୍ସ ମାଧମର ବିକାଶ ପରେ ଅନେକ ବିଚାରି ଥିଲେ ବହିର ଯୁଗ ସମ୍ଭବତଃ ଶେଷ ହୋଇଗଲା । କିନ୍ତୁ ବହି ମୁଣ୍ଡ ଟେକି କେବଳ ରହିନି ବେଶ ଉନ୍ନତି ପଥରେ ଅଗ୍ରସର ହୋଇଛି । ବହି ପାଇଁ ଚତୁର୍ଦ୍ଦିଗରେ ଜିଜ୍ଞାସାର ଶେଷ ନାହିଁ । ଭାରତରେ, ବିଭିନ୍ନ ଦେଶରେ ବହିକୁ ନେଇ ବହୁ ପୁରସ୍କାର ପ୍ରବର୍ତ୍ତନ ହୋଇଛି । ନୋବେଲ୍ ପୁରସ୍କାରର ମୂଳ ଉପାଦାନ ହେଉଛି ବହି । ସେ ସାହିତ୍ୟ ହେଉ ବା ବିଜ୍ଞାନ ହେଉ, ଅର୍ଥନୀତି ହେଉ ବା ଭେଷଜ ବିଦ୍ୟା ହେଉ ବା ଗଣିତରେ ହେଉ ।

ବହି ହେଉଛି ସାହିତ୍ୟର ମୂଳ ଆଧାର । ଏବେ ଯାହା ଛାପା ହୋଇ ଆମ ସମ୍ମୁଖକୁ ଆସୁଛି ପ୍ରାଚୀନ ଯୁଗରେ ତାହା ତାଳପତ୍ର ପୋଥିରେ ଆତ୍ମପ୍ରକାଶ କରିଥିଲା । ପରବର୍ତ୍ତୀ ସମୟରେ ପୋଥି ରୂପାନ୍ତରିତ ହେଲା ବହିରେ ।

ବହି ମେଳାରୁ ଆମେ ବହି ଆଡ଼କୁ ଚାଲିଗଲୁ । ଏବେ ଆସନ୍ତୁ ଯିବା ବହି ମେଳାକୁ । ବିଶ୍ୱ ପୁସ୍ତକ ମେଳାର ସଫଳତା ଅନେକଙ୍କୁ ବାଟ ଦେଖାଇଲା ନିଜ ନିଜ ରାଜ୍ୟରେ ପୁସ୍ତକ ମେଳା କରିବା ପାଇଁ । ଏହା ପରେ ଆରମ୍ଭ ହେଲା ବିଖ୍ୟାତ କୋଲକାତା ପୁସ୍ତକ ମେଳା । ସାଧାରଣ ପାଠକମାନଙ୍କୁ ବହି ପ୍ରତି ଆକୃଷ୍ଟ କରିବା ପାଇଁ ପବ୍ଲିଶର୍ସ ଓ ବୁକ୍ ସେଲର୍ସ ଗିଲ୍ଡ ପକ୍ଷରୁ ଆରମ୍ଭ ହେଲା କୋଲକାତା ପୁସ୍ତକ ମେଳା ବା 'କୋଲକାତା ବଇ ମେଲା' । ୧୯୭୬ ମସିହାରୁ ଆରମ୍ଭ ହୋଇଥିବା ଏହି ପୁସ୍ତକ ମେଳା ସମ୍ଭବତଃ ବର୍ତ୍ତମାନ ପୃଥିବୀର ଅନ୍ୟତମ ବୃହତ୍ତମ ପୁସ୍ତକ ମେଳା । କୋଲକାତା ପୁସ୍ତକ ମେଳା ଏବେ ଆନ୍ତର୍ଜାତିକ ପୁସ୍ତକ ମେଳାର ସମ୍ମାନ ପାଇଛି । କାରଣ ଦିଲ୍ଲୀ ବିଶ୍ୱ ପୁସ୍ତକ ମେଳାକୁ ବାଦ୍ ଦେଲେ ଭାରତରେ କେବଳ କୋଲକାତା ବହି ମେଳାରେ ପୃଥିବୀର ବହୁ ଦେଶ ଭାଗ

ନେଇଥାନ୍ତି । ଏ ବର୍ଷ କୋଲକାତା ପୁସ୍ତକ ମେଳାର ମୁଖ୍ୟ ପ୍ରସଙ୍ଗ ଥିଲା 'ନେଦରଲ୍ୟାଣ୍ଡ' । ନେଦରଲ୍ୟାଣ୍ଡର ଏକ ବିରାଟ ଷ୍ଟଲ୍‌ରେ ସେ ଦେଶର ବହି ବିଶେଷ କରି ସେ ଦେଶର ଜାତୀୟ ଭାଷା ଓ ଇଂରାଜୀ ବହିର ବିରାଟ ପ୍ରଦର୍ଶନୀ । ଅନ୍ୟାନ୍ୟ ଦେଶ ମଧ୍ୟରେ ଇଂଲଣ୍ଡ, ଆମେରିକା, ଫ୍ରାନ୍ସ, ବାଂଲା ଦେଶ ଓ ସୁଇଜରଲାଣ୍ଡ ଆଦି ଦେଶମାନଙ୍କର ବହିର ବିପଣୀ ଏହି ପୁସ୍ତକ ମେଳାରେ ପ୍ରଦର୍ଶିତ ହୋଇଥିଲା । ଭାରତର ବହୁ ଭାଷାର ପୁସ୍ତକ ଏହି ମେଳାରେ ପ୍ରଦଶତ ହେଉଥିବା ବେଳେ କେବଳ ଓଡ଼ିଆ ଭାଷାର କୌଣସି ପୁସ୍ତକ ଏଠାରେ ଦେଖିବାକୁ ମିଳେ ନାହିଁ । କୋଲକାତାକୁ ବୃହତ୍ତମ ଓଡ଼ିଆ ନଗରୀ ବୋଲି ଅନେକ କୁହନ୍ତି । କୋଲକାତା ସହରରେ ଛ'ରୁ ଆଠ ଲକ୍ଷ ଓଡ଼ିଆ ବାସ କରନ୍ତି । ଅଥଚ ଆମର ବ୍ୟକ୍ତିଗତ ଭାବେ ବା ସାମୂହିକ ଭାବେ କୌଣସି ପ୍ରକାଶକ ଏହି ପୁସ୍ତକ ମେଳାରେ ଅଂଶଗ୍ରହଣ କରନ୍ତି ନାହିଁ । ବିଜୁ ପଟ୍ଟନାୟକ ମନ୍ତ୍ରିମଣ୍ଡଳ ବେଳେ ୧୯୯୪ ମସିହାରେ ଥରେ ଓଡ଼ିଶା ସରକାରଙ୍କ ସଂସ୍କୃତି ବିଭାଗ ପକ୍ଷରୁ ବିଜୁ ବାବୁଙ୍କ ନିର୍ଦ୍ଦେଶରେ ଏହି ପୁସ୍ତକ ମେଳାରେ ଏକ ମନୋରମ ଓଡ଼ିଶା ଷ୍ଟଲ୍ ନିର୍ମିତ ହୋଇଥିଲା । ସେ ବର୍ଷ କୋଲକାତା ପୁସ୍ତକ ମେଳାର ମୁଖ୍ୟ ପ୍ରସଙ୍ଗ ଥିଲା 'ଓଡ଼ିଶା' । ତା' ପରଠାରୁ ଆଉ କୌଣସି ଓଡ଼ିଆ ପ୍ରକାଶକଙ୍କ ପୁସ୍ତକ ଏଥିରେ ଦେଖିବାକୁ ମିଳେ ନାହିଁ । ଓଡ଼ିଶାର ଅନେକ ପ୍ରକାଶକ ବା ପୁସ୍ତକ ବିକ୍ରେତା କୋଲକାତା ପୁସ୍ତକ ମେଳା ଦେଖିଛନ୍ତି କି ନାହିଁ ସେଥିରେ ଆମର ସନ୍ଦେହ ରହିଛି ।

ଏହି ପ୍ରସଙ୍ଗରେ ଭୁବନେଶ୍ୱର ପୁସ୍ତକ ମେଳା କଥା ଉଲ୍ଲେଖ କରାଯାଇପାରେ । ଓଡ଼ିଆ ବହିର ବିକ୍ରୟ କମିଗଲା ବୋଲି ଯେତେବେଳେ ଆମର ପ୍ରକାଶକମାନେ ଚିତ୍କାର କଲେ ଲେଖକ ସାମୁଖ୍ୟ ପକ୍ଷରୁ ୧୯୮୫ ମସିହାରେ ଆରମ୍ଭ ହେଲା ଭୁବନେଶ୍ୱର ପୁସ୍ତକ ମେଳା । ପୁସ୍ତକ ମେଳା ପରିଚାଳନା ପାଇଁ ଆମର ଅଭିଜ୍ଞତା ନଥିବାରୁ ଆମେ ଏ କ୍ଷେତ୍ରରେ ପ୍ରଥମେ ଏନ୍.ବି.ଟି.ର ସାହାଯ୍ୟ ନେଇଥିଲୁ । ୧୯୮୬ ମସିହାରୁ ଆମେ ସ୍ୱାଧୀନ ଭାବେ ଏହି ପୁସ୍ତକ ମେଳା ପରିଚାଳନା କରି ଆସୁଅଛୁ । ଆମେ ଖୁସି, ପ୍ରତିବର୍ଷ ଦେଶର ବହୁ ନୂଆ ନୂଆ ଏବଂ ବିଖ୍ୟାତ ପ୍ରକାଶନ ସଂସ୍ଥା ଭୁବନେଶ୍ୱର ପୁସ୍ତକ ମେଳାରେ ଅଂଶଗ୍ରହଣ କରି ଆସୁଛନ୍ତି । ଏ ବର୍ଷ ଭୁବନେଶ୍ୱର ପୁସ୍ତକ ମେଳାରେ ତିନିଶହ କୋଡ଼ିଏଟି ଷ୍ଟଲ୍ ଖୋଲା ଯାଇଛି । ଛୋଟ ବଡ଼ ଦୁଇଶହରୁ ଊର୍ଦ୍ଧ୍ୱ ପ୍ରକାଶକ, ପୁସ୍ତକ ବିକ୍ରେତା, ଇଂରାଜୀ ଓ ଓଡ଼ିଆ ସମ୍ବାଦପତ୍ର, ପତ୍ରିକା ସଂସ୍ଥାଙ୍କଠାରୁ ଆରମ୍ଭ କରି ବହୁ ଧର୍ମ ପୁସ୍ତକ ପ୍ରକାଶକ ଯୋଗ ଦେଇଛନ୍ତି । ପ୍ରତିବର୍ଷ ଫେବ୍ରୁଆରୀ ୨୬ ତାରିଖରୁ ମାର୍ଚ୍ଚ ୭ ତାରିଖ ପର୍ଯ୍ୟନ୍ତ ଏହି ପୁସ୍ତକ ମେଳା ଅନୁଷ୍ଠିତ ହୋଇ ଆସୁଅଛି । ଭୁବନେଶ୍ୱର ପୁସ୍ତକ ମେଳାର ଅଠର ବର୍ଷର ସାଧନା ଓଡ଼ିଶାରେ ଏକ ପୁସ୍ତକ ଆନ୍ଦୋଳନ ସୃଷ୍ଟି କରିଛି କହିଲେ ବହୁ ଭାଷଣ ହେବ ନାହିଁ । ମାନନ୍ତୁ ବା ନ ମାନନ୍ତୁ ରାଜ୍ୟର ଅଧିକାଂଶ ସହରରେ ଏବେ ଯେଉଁ ପୁସ୍ତକ ମେଳା ମାନ ମୁଣ୍ଡ ଟେକିଛି ତା'ର ପ୍ରେରଣା ଭୁବନେଶ୍ୱର ପୁସ୍ତକ ମେଳା । ବିଶ୍ୱ ପୁସ୍ତକ ମେଳାର ବିସ୍ତୃତ ପଟ୍ଟଭୂମିରେ ଭୁବନେଶ୍ୱର ପୁସ୍ତକ ମେଳା ବିନ୍ଦୁଟିଏ ଭଳି ହେଲେ ମଧ୍ୟ ଓଡ଼ିଶାର ବୁଦ୍ଧିଜୀବୀ ଜନସାଧାରଣଙ୍କ ପଠନ କ୍ଷୁଧା ମେଣ୍ଟାଇବା ଦିଗରେ ଏ ପ୍ରୟାସ ଯେ କୌଣସି ଗୁଣରେ କମ୍ ନୁହେଁ ସେ କଥା ଅନ୍ତତଃ ଆମେ ଦୃଢ଼ତାର ସହ କହିପାରୁ ।

ଶେଷରେ ପାଠକ ବନ୍ଧୁମାନଙ୍କୁ ବିଶ୍ୱର କେତେକ ବିଖ୍ୟାତ ପୁସ୍ତକ ମେଳା ସଂପର୍କରେ ସୂଚନା ଦେଉଛୁ । ଏ ସମସ୍ତ ମେଳାରେ ଶହ ଶହ କୋଟି ଟଙ୍କାର ବହି ବିକ୍ରି ହୁଏ । ପୃଥିବୀର ବହୁ ନାମୀ ଦାମୀ ପ୍ରକାଶକ, ପୁସ୍ତକ ବିକ୍ରେତା ଓ ଲେଖକ ଏହି ସବୁ ମେଳାରେ ଯୋଗ ଦେଇ ଥାଆନ୍ତି । ଏଗୁଡ଼ିକ ମଧ୍ୟରେ ଅଛନ୍ତି କାଇରୋ (ଇଜିପ୍ଟ), କ୍ୟାନେସ୍ (ଫ୍ରାନ୍ସ), ବ୍ରସେଲ୍ସ (ବେଲ୍‌ଜିୟମ୍), ପ୍ୟାରିସ୍ (ଫ୍ରାନ୍ସ), ଲଣ୍ଡନ୍ (ଇଂଲଣ୍ଡ), ବୋଲୋନା (ଇଟାଲି), ବୁଏନ୍ସ ଏ ଆରସ୍ (ଆର୍ଜେଣ୍ଟିନା), ଟୋକିଓ (ଜାପାନ), ବୁଦାପେଷ୍ଟ (ହଙ୍ଗେରି), ବୋଗଟୀ (କଲମ୍ବିଆ), ସାଓ ପାଓଲୋ (ବ୍ରାଜିଲ୍), ଜେନେଭା (ସୁଇଜରଲ୍ୟାଣ୍ଡ), ପ୍ରେଗ୍ (ଚେକ୍ ରିପବ୍ଲିକ୍), ୱାର୍ସା (ପୋଲାଣ୍ଡ), ଚିକାଗୋ (ଆମେରିକା), ସିଓଲ (କୋରିଆ), ସିଡ଼ନି (ଅଷ୍ଟ୍ରେଲିଆ), ହାରାରେ (ଜିମ୍ବାୱେ), ଦିଲ୍ଲୀ (ଭାରତ), ବେଜିଂ (ଚୀନ୍), ମସ୍କୋ (ରୁଷିଆ), କୋଲକାତା (ଭାରତ), ବାର୍ସେଲୋନା (ସ୍ପେନ), ଫ୍ରାଙ୍କଫୁର୍ଟ (ଜର୍ମାନୀ), ବେଲ୍‌ଗ୍ରେଡ଼ (ଯୁଗୋସ୍ଲୋଭିଆ), ସାଣ୍ଟିଆଗୋ ଡେ ଚିଲି (ଚିଲି), ଆଣ୍ଟେରେପନ୍ (ବେଲଜିଅମ୍), ମଣ୍ଟ୍ରିଲ୍ (କାନାଡ଼ା) ଓ ଗୁଆଡ଼ା ଲାଜରା (ମେକ୍ସିକୋ) । (ଜେନିଭା ବିଶ୍ୱ ସଂସ୍ଥା ଦ୍ୱାରା ପ୍ରକାଶିତ IPA, UIE-2000 Geneva)

ସମଗ୍ର ବିଶ୍ୱରେ ବହିର ସମୁଦ୍ରରେ ଆମେ ମଧ୍ୟ ବିନ୍ଦୁଟିଏ ଭଳି ମିଶିଯିବା । ଓଡ଼ିଶାର ଗୌରବୋଜ୍ଜ୍ୱଳ ଐତିହ୍ୟକୁ ଆସନ୍ତୁ ଆମେ ମଧ୍ୟ ସେଇ ବହି ଭିତରୁ ଖୋଜିବା । ବହିର ଜୟ ହେଉ ।

# ଭୁବନେଶ୍ୱର ପୁସ୍ତକ ମେଳା- ତ୍ରିବେଣୀ ସଙ୍ଗମ

ଯୁଗଳ କିଶୋର ଦତ୍ତ

ଭୁବନେଶ୍ୱର ପୁସ୍ତକ ମେଳା ପୁଣି ପ୍ରତିବର୍ଷର ଫେବ୍ରୁଆରୀ ମାସର ଛବିଶ ତାରିଖକୁ ଆଙ୍ଗୁଠି ଦେଖାଇ କୁହେ ଓଡ଼ିଶାର ସାହିତ୍ୟ ପର୍ବ ଆରମ୍ଭ ହେଲା । ବାରମାସର ଚଉଦ ପର୍ବ ଆରମ୍ଭ ହେଲା । ପୁସ୍ତକ ମେଳାର ଜନସମୁଦ୍ର ମଧ୍ୟରେ ପାଠକ ହଜିଯାଉଥିବା ବେଳେ ମନମୁତାବକ ବହି ଖଣ୍ଡିଏ ଖୋଜି ବୁଲୁଥିବା ବେଳେ, ହଠାତ୍ ଦୀର୍ଘଦିନର ବନ୍ଧୁ ସହିତ ଦେଖା ହେବା ବେଳେ ମନେ ହୁଏ ତାହା ହିଁ ପୁସ୍ତକ ମେଳାର ଗର୍ବ ଏବଂ ପୁସ୍ତକ ମେଳାର ସାର୍ଥକତା ।

ଗୋଟିଏ ବର୍ଷର ସଞ୍ଚିତ ମନକୁ ନେଇ ଦର୍ଶକ, ପାଠକ ଯେତେବେଳେ ପୁସ୍ତକ ମେଳା ମଧ୍ୟରେ ଘୂରି ବୁଲୁଥାଏ, ତାହା ପ୍ରମାଣ କରେ ଯେ ବହି ଲାଗି ଜଣେ ପାଠକର ମମତା କେତେ । ବହି ପଢ଼ିବା ଲାଗି ଆଗ୍ରହ କେତେ ।

ଭୁବନେଶ୍ୱର ପୁସ୍ତକ ମେଳା ମଧ୍ୟରେ କେବଳ ବହି ଦେଖିବା ନୁହେଁ କିମ୍ବା ତାହା ପ୍ରିୟ କବିମାନଙ୍କର ଉଷ୍ମ ସାନିଧ କିମ୍ବା ଲେଖକ ସହିତ ପରିଚିତ ହେବାର ସୁଯୋଗ ମଧ ଘଟିଥାଏ । ଧୂଳି ଧୂସରିତ ଭିଡ଼ ମଧ୍ୟରେ ଚାଲୁ ଚାଲୁ ଶେଷ ଅପରାହ୍ନର ଖରାରେ ଦେଖା ହୋଇଯାଏ ପୁରୁଣା ବନ୍ଧୁ ବାନ୍ଧବୀମାନଙ୍କ ସହିତ ।

ଏହି ପୁସ୍ତକ ମେଳାର ଆଉ ଗୋଟିଏ ବିଶେଷତ୍ୱ ହେଲା, ଏଠାରେ ପାଠକ, ଲେଖକ ଓ ପ୍ରକାଶକମାନଙ୍କର ଏକତ୍ରୀକରଣ; ଯାହାକୁ ତ୍ରିବେଣୀ ସଙ୍ଗମ କହିଲେ, ଅତ୍ୟୁକ୍ତି ହେବ ନାହିଁ । ଏହି ପୁସ୍ତକ ମେଳା ଭାବ ବିନିମୟର ବିରାଟ ମିଳନଭୂମି । କିଛି ମଣିଷ ଅଛନ୍ତି ଯେଉଁମାନେ ପଣ୍ୟ ସଭ୍ୟତାର ବ୍ୟସ୍ତତା ମଧ୍ୟରେ ଦୈନନ୍ଦିନ ଖାଇବା ପିନ୍ଧିବା ଭଳି ବହିକୁ ମଧ ଖୁବ୍ ଭଲ ପାଆନ୍ତି । ସାରାବର୍ଷ ମଧ୍ୟରେ କିଛି ଟଙ୍କା ଜମା କରି ରଖିଥାଆନ୍ତି, ଏହି ପୁସ୍ତକ ମେଳାରୁ କିଛି ମନ ମୁତାବକ ବହି କିଣିବା ପାଇଁ । ତେଣୁ ସେମାନେ ଏହି ପୁସ୍ତକ ମେଳାର ବହି ସମୁଦ୍ର ମଧ୍ୟରେ ବୁଡ଼ିଯାଇ ଖୋଜିବୁଲନ୍ତି ନିଜର ପ୍ରିୟ ବହି ଖଣ୍ଡିକ । ବହି ମଣିଷକୁ ମୁକ୍ତି ଦିଏ, ଆନନ୍ଦ ଦିଏ, ସ୍ୱପ୍ନ ଦେଖାଏ । ତେଣୁ ଏହି ଭୁବନେଶ୍ୱର ପୁସ୍ତକ ମେଳା ଯାହାକୁ ବହିର ହାଟ କହିଲେ କିଛି ଅତ୍ୟୁକ୍ତି ହେବ ନାହିଁ ।

ଏହି ଭୁବନେଶ୍ୱର ପୁସ୍ତକ ମେଳା ସମୟରେ ଓଡ଼ିଶାର ପ୍ରକାଶକମାନେ ପ୍ରାୟ ଗତ ଆଠ, ଦଶ ବର୍ଷ ହେଲା କିଛି ନୂଆ ବହି ପ୍ରକାଶ କରି ଆସୁଛନ୍ତି; ଯାହା ପୁସ୍ତକ ମେଳାର ଗୋଟିଏ ଆକର୍ଷଣ । ପାଠକ ମଧ ନୂଆ ମନ ନେଇ ଆସିଥାଏ କିଛି ନୂଆ ବହି ଦେଖିବ, ଘୂରି ବୁଲି ବୁଲି ମନ ପସନ୍ଦ ବହି କିଣିବ, ଆଉ ନିଜର ପ୍ରିୟ ଲେଖକଙ୍କୁ ଦେଖିଲେ କିଛି ସମୟ, ଯଦି ଜଣାଶୁଣା ଥାଏ ତେବେ ପଦେ ଦୁଇପଦ କଥାବାର୍ତ୍ତା ହେବ । ନ ହେଲେ ଠିଆହୋଇ କହି ଉଠିବ - ଆରେ ଏହି ଲେଖକ ମୋର ଅତି ପ୍ରିୟ । ତାଙ୍କର ଖଣ୍ଡିଏ ବହି ମୁଁ ବର୍ତ୍ତମାନ କିଣି ଆଣିଲି । ତେଣୁ ଏହି ପୁସ୍ତକ ମେଳା ଗୋଟିଏ ତ୍ରିବେଣୀ ସଙ୍ଗମ । ପାଠକ, ଲେଖକ ଓ ପ୍ରକାଶକମାନଙ୍କର ମିଳନସ୍ଥଳ ।

ପ୍ରତିବର୍ଷ କୋଲକାତା ପୁସ୍ତକ ମେଳାକୁ ମୁଁ ଯାଉଛି ଆଜକୁ ଅଠରବର୍ଷ ହେଲା । ସେଠାରେ ଦେଖିଛି କିଛି ବିଶିଷ୍ଟ ଲେଖକ ନିର୍ଦ୍ଦିଷ୍ଟ କେତେଗୁଡ଼ିଏ ବହି ଷ୍ଟଲ ସାମ୍ନାରେ ଖଣ୍ଡିଏ ଚଉକି ପକାଇ ବସି ସେମାନଙ୍କର ପ୍ରିୟ ପାଠକମାନେ କିଣି ଆଣିଥିବା ବହିରେ ନିଜର ଦସ୍ତଖତ ଦେଉଥାଆନ୍ତି । ବହି କିଣିବା ପାଇଁ ଷ୍ଟଲମାନଙ୍କ ସାମ୍ନାରେ ଯେପରି ବଡ଼ ଧାଡ଼ି ଲମ୍ୱିଯାଇଥାଏ, ବହିର ଲେଖକଙ୍କ ପାଖରୁ କିଣିଥିବା ବହିରେ ତାଙ୍କର ସ୍ୱାକ୍ଷର ନେବା ପାଇଁ ମଧ ସେହିପରି ଲମ୍ୱା ଧାଡ଼ି ଲମ୍ୱିଯାଇଥାଏ । କେତେକ ପାଠକ ସେ ନାରୀ ହେଉ, ପୁରୁଷ ହେଉ, ଛାତ୍ରୀ ହେଉ, ଉକ୍ତ ଲେଖକଙ୍କର ପାଦଧୂଳି ନେଇ ହସି ହସି କଥା କହିବା ମଧ ଏହି ମେଳାରେ ଦେଖିବା ପାଇଁ ମିଳିଥାଏ ।

କିଛି ବର୍ଷ ତଳେ କୋଲକାତା ପୁସ୍ତକ ମେଳାରେ ଦେଖିଥିଲି ଆନନ୍ଦ ପବ୍ଲିଶର୍ସ ଷ୍ଟଲ ସାମ୍ନାରେ ବିରାଟ ଧାଡ଼ି ଲମ୍ୱିଯାଇଛି । ପ୍ରାୟ ଦେଢ଼ଶହ ଲୋକ ଧାଡ଼ିରେ ଛିଡ଼ା ହୋଇଛନ୍ତି । ଷ୍ଟଲର ଗ୍ରୀଲ୍ ଖୋଲା ହେଲେ ପ୍ରବେଶ କରିବେ,

କାରଣ ସେତେବେଳେ ଷ୍ଟଲ ଭିତରେ ପାଠକ ବହି କିଣୁଥାନ୍ତି । ଏହା ହେଲା ଏଠାରେ ପୁସ୍ତକ ମେଳାର ଶୃଙ୍ଖଳା

ବିଭୂତି ପଟ୍ଟନାୟକ ମୋତେ କହିଲେ, ଯୁଗଳ ବାବୁ ସେଠାକୁ ଯାଇ ଖବର ନେଲେ ସେମାନେ କେଉଁ ବହି କିଣିବା ପାଇଁ ଧାଡ଼ିରେ ଛିଡ଼ା ହୋଇଛନ୍ତି ? ମୁଁ ଯାଇ ସେମାନଙ୍କୁ ପଚାରିଲି ଆପଣମାନେ କେଉଁ ବହି କିଣିବା ପାଇଁ ଠିଆହୋଇଛନ୍ତି ? ସେମାନେ କହିଲେ ସମରେଶ ବସୁଙ୍କର ଲିଖିତ 'ଦେଖି ନାଇଁ ଫିରେ' ବହି କିଣିବା ପାଇଁ ଠିଆ ହୋଇଛନ୍ତି । ପୁଣି ଶୁଣିଲି ସେହି ବହିର ମୂଲ୍ୟ ଏକ ହଜାର ଟଙ୍କା । ବିଭୂତି ପଟ୍ଟନାୟକ, ବରେନ୍ଦ୍ର କୃଷ୍ଣ ଧଳ ଓ ମୁଁ ଆଶ୍ଚର୍ଯ୍ୟ ହୋଇ ଯାଇଥିଲୁ । କାରଣ ଜଣେ ଲେଖକଙ୍କର ବହି ପ୍ରତି ପାଠକମାନଙ୍କର କେତେ ଶ୍ରଦ୍ଧା, ଆନ୍ତରିକତା ଓ ତାଙ୍କର ବହି ପଢ଼ିବା ପାଇଁ କେତେ ଆଗ୍ରହ, ଏହା ଦ୍ୱାରା ପ୍ରମାଣିତ ହୋଇଯାଇଥିଲା ।

ପ୍ରତିଦିନ ବଙ୍ଗଳା ଖବରକାଗଜରେ କୋଲକାତା ପୁସ୍ତକ ମେଳା ସମ୍ପର୍କରେ ସମ୍ବାଦ ପ୍ରକାଶ ପାଇଥାଏ । ପ୍ରକାଶକମାନେ ମଧ୍ୟ ପ୍ରତିଦିନ ସେମାନଙ୍କର ନୂଆ ହୋଇ ପ୍ରକାଶିତ ହୋଇଥିବା ବହିର ତାଲିକା ପ୍ରକାଶ କରିଥାଆନ୍ତି । ୧୯୯୮ ମସିହାରେ 'ବର୍ତ୍ତମାନ' ବଙ୍ଗଳା ଦୈନିକ ଖବର କାଗଜରେ ଦେଖିଲି 'ନିଉ ଏଜ୍ ପବ୍ଲିକେଶନ' ନାମକ ଜଣେ ପ୍ରକାଶକ ବିଜ୍ଞାପନ ଦେଇଥିଲେ । ଫେବୃଆରୀ ୧ ତାରିଖ ରବିବାର ଅପରାହ୍ନ ସାଢ଼େ ଚାରିଟା ସମୟରେ ଆମ ବହି ଷ୍ଟଲ୍ ରେ ପ୍ରଖ୍ୟାତ ଲେଖକ ଶଙ୍କର ଉପସ୍ଥିତ ଥାଇ କ୍ରେତାମାନଙ୍କୁ ତାଙ୍କର ସ୍ୱାକ୍ଷର ଦେବେ । ତାଙ୍କର ଜନପ୍ରିୟ ଉପନ୍ୟାସ 'ଏକ ଦିନ୍ ହଠାତ୍'ର ୧୧୪ ସଂସ୍କରଣ ମଧ୍ୟ ଆଜି ପ୍ରକାଶ ପାଇବ । ଏହି ଖବର ପଢ଼ି ମୁଁ ସମ୍ମୋହିତ ହୋଇଯାଇଥିଲି । କାରଣ ପାଠକ ଆଜି ଏହି ବହିର ୧୧୪ ସଂସ୍କରଣ ପ୍ରକାଶ କରିବା ପାଇଁ ପ୍ରକାଶକଙ୍କୁ ବାଧ୍ୟ କରିଛନ୍ତି । ଏହା ଦ୍ୱାରା ପାଠକ ଓ ଲେଖକ ମଧ୍ୟରେ ଯେଉଁ ନିବିଡ଼ ସମ୍ପର୍କ ତାହା ପ୍ରକାଶକ ଜଣାଇ ଦେଇଥିଲେ । ଦେଖିଥିଲି ସାଢ଼େ ଚାରିଟା ବାଜିବା ପୂର୍ବରୁ ଶଙ୍କର ନିଜେ ଷ୍ଟଲ ଭିତରେ ଠିଆ ହୋଇଥିଲେ ଓ ପାଠକମାନେ ତାଙ୍କର ବହି କିଣି ତାଙ୍କର ସ୍ୱାକ୍ଷର ନେବା ପାଇଁ ଆଗେଇ ଯାଉଥିଲେ ଧାଡ଼ିରେ ।

'ଦେଜ୍ ପବ୍ଲିସିଙ୍ଗ' ଷ୍ଟଲ ସାମ୍ନାରେ ବସିଥିଲେ ପ୍ରଖ୍ୟାତ ଗଳ୍ପ ଓ ଉପନ୍ୟାସ ଲେଖକ ନିମାଇ ଭଟ୍ଟାଚାର୍ଯ୍ୟ । ଧାଡ଼ି ଲମ୍ବିଯାଇଥିଲା ଷ୍ଟଲ ଆଗରେ ବହି କିଣିବା ପାଇଁ ଏବଂ ପୁଣି ତାହା ପାଖରେ ବହି କିଣି ଆଣି ଧାଡ଼ି ଲମ୍ବି ଯାଇଥିଲା ଲେଖକଙ୍କ ଠାରୁ ବହିରେ ସ୍ୱାକ୍ଷର ନେବା ପାଇଁ । ଯୁବକ ଯୁବତୀମାନେ ଆସି ତାଙ୍କର ଦସ୍ତଖତ ବହିରେ ନେଇ ତାଙ୍କର ପାଦଧୂଳି ମଥାରେ ମାରି ହସି ହସି ଚାଲିଯାଉଥିଲେ । ମିଷ୍ଟର ଭଟ୍ଟାଚାର୍ଯ୍ୟ ମଧ୍ୟ ସେମାନଙ୍କ ମଧ୍ୟରୁ କିଛି ପାଠକମାନଙ୍କର ନା ପଚାରି ବହି ଉପରେ ଲେଖି ନିଜର ଦସ୍ତଖତ ଦେଉଥିଲେ । ମୁଁ ସେଦିନ କୋଲକାତା ପୁସ୍ତକ ମେଳା ମଧ୍ୟରେ ଏହି ଦୁଇଜଣ ଲେଖକଙ୍କ ପାଖରେ କିଛି ସମୟ ବସି ରହି ଏହି ଦୃଶ୍ୟ ଦେଖିଥିଲି । ମୋ ପାଖରେ ମଧ୍ୟ ଥିଲେ ମୋର ବନ୍ଧୁ ଉତ୍ତମ ଚରଣ ନାୟକ । ଦେଖିଥିଲି ପ୍ରକୃତରେ ଏହି ପୁସ୍ତକ ମେଳା ଲେଖକ ପାଠକ ପ୍ରକାଶକମାନଙ୍କର ଏକ ମିଳନ ସ୍ଥଳ-ତ୍ରିବେଣୀ ସଙ୍ଗମ ।

କିନ୍ତୁ ଆମର ଭୁବନେଶ୍ୱର ପୁସ୍ତକ ମେଳାରେ ଏମିତି ଦୃଶ୍ୟ ଏବେ ମଧ୍ୟ ଦେଖିବା ପାଇଁ ମିଳି ନାହିଁ । ଏଠାରେ ପ୍ରଖ୍ୟାତ ଲେଖକମାନେ ସାଧାରଣ ପାଠକମାନଙ୍କ ପାଖରେ, କ୍ରେତାମାନଙ୍କ ପାଖରେ ପରିଚିତ ହେବା ପାଇଁ ମଧ୍ୟ ଆଗ୍ରହ ଥିବା ପରିଲକ୍ଷିତ ହୁଏ ନାହିଁ । ତେଣୁ ପାଠକ କ୍ରେତା ଓ ଲେଖକ ମଧ୍ୟରେ କୌଣସି ନିବିଡ଼ତା ଦେଖାଯାଏ ନାହିଁ । ଏହାର ଅଭାବ ବହୁ ପରିମାଣରେ ଏବେ ମଧ୍ୟ ରହିଯାଇଛି ।

ତେଣୁ ଏହି ପୁସ୍ତକ ମେଳା, ଏହି ବହିର ହାଟ ମଧ୍ୟରେ ଏହାର ଉପଲବ୍ଧି ଅତ୍ୟନ୍ତ ଆବଶ୍ୟକ । ଏହି ତ୍ରିବେଣୀ ସଙ୍ଗମର ଆବଶ୍ୟକତା ଅତ୍ୟନ୍ତ ଜରୁରୀ ।

ଆଉ ଗୋଟିଏ କଥା ମଧ୍ୟ ଏଠାରେ ମନକୁ ଆସେ ଏହି ପୁସ୍ତକ ମେଳା ପାଠକ, ଦର୍ଶକ, କ୍ରେତାମାନଙ୍କର ଏକ ଭାବ ବିନିମୟର ପୀଠସ୍ଥଳୀ । କିଛି ସମୟ ପାଇଁ ପାରିବାରିକ ଝଞ୍ଝାଳ ମଧ୍ୟରୁ ମୁକ୍ତ ରହିବା ଲାଗି ଏହା ମଧ୍ୟ ସହାୟକ । ବହି

ଭିତରେ ମଗ୍ନ ହୋଇ, ଘୂରି ବୁଲିବା ମଧ୍ୟ ବହି ପ୍ରତି ଆକର୍ଷଣର ଏକ ଉତ୍ସ କହିଲେ ଅତ୍ୟୁକ୍ତି ହେବ ନାହିଁ । ବହି - କେବଳ ବହି । ସ୍କୁଲ କଲେଜର ବହି ଠାରୁ ଆରମ୍ଭ କରି ଗଳ୍ପ, ଉପନ୍ୟାସ, ପ୍ରବନ୍ଧ, କବିତା, ନାଟକର ବହି ସର୍ବସାଧାରଣଙ୍କୁ ଯେଉଁ ଆନନ୍ଦ ଦେଇଥାଏ, ତାହାର ଆଉ କୌଣସି ବିକଳ୍ପ ଅଛି ବୋଲି ମନେ ହୁଏ ନାହିଁ ।

ଆଜି ଏହି ଇଲେକ୍‌ଟ୍ରୋନିକ୍ସ ଯୁଗରେ ଟିଭି ବହୁ ଜ୍ଞାନ ବିତରଣ କରୁଛି ବୋଲି ଯାହା କୁହାଯାଏ ମୋର ମନେ ହୁଏ, ଏହି ତଥ୍ୟ ଯେତେ ମନୋରଂଜକ ହେଲେ ମଧ୍ୟ ଛପା ଅକ୍ଷରର ବହି ପରି ତୀବ୍ର ନୁହେଁ । ଟିଭି ଦେଖି ସ୍ମୃତିଶକ୍ତି ବଢ଼େ ନାହିଁ । ତଥ୍ୟର ଓଭରଲୋଡ଼ିଙ୍ଗ ପାଇଁ ଟିଭି ସାମ୍‌ନାରେ ବସି ମୁଣ୍ଡର ସ୍ମୃତିଶକ୍ତି ବଢ଼ାଇବା ସମ୍ଭବ ନୁହେଁ, ତେଣୁ ବହି ପଢ଼ିବା ଅଭ୍ୟାସ କେବଳ ନିଜକୁ ଆନନ୍ଦ ଦିଏ ନାହିଁ । ନିଜର ପରିବାରର ସାନ ପିଲାଙ୍କ ପାଇଁ ମଧ୍ୟ ଏକ ଶିକ୍ଷଣୀୟ କଥା । କାରଣ ବାପା ମାଆଙ୍କର ବହି ପଢ଼ା ଅଭ୍ୟାସ ହିଁ ପିଲାମାନଙ୍କୁ ସେମାନଙ୍କର ଶୈଶବରୁ ଏକ ଶିକ୍ଷା ଦେଇଥାଏ ଯଦ୍ୱାରା ସେମାନେ ବଡ଼ ହୋଇ ବହି ପଢ଼ିବା ଲାଗି ଅଭ୍ୟାସ କରିଥାଆନ୍ତି । ତେଣୁ ବହି ମେଳାରେ ପିଲାମାନଙ୍କର ଉପଯୋଗୀ ବହି ଅଭିଭାବକମାନେ କିଣି ଦେବା ଆବଶ୍ୟକ । ପିଲାମାନଙ୍କର ଗଳ୍ପ, ବିଜ୍ଞାନୀମାନଙ୍କର ଜୀବନୀ, ଆଡ଼ଭେଞ୍ଚର ଗଳ୍ପ, କୀଟପତଙ୍ଗ, ପଶୁପକ୍ଷୀମାନଙ୍କର ବହି ପ୍ରକାଶକମାନେ ବହୁଳ ଭାବରେ ପ୍ରକାଶ କରିବା ଉଚିତ । ଏଥିଲାଗି ଶିଶୁ ସାହିତ୍ୟ ସୃଷ୍ଟି କରିବା ପାଇଁ ଶିଶୁ ସାହିତ୍ୟିକମାନଙ୍କର ପ୍ରଚେଷ୍ଟା ଆବଶ୍ୟକ; ଯଦ୍ୱାରା କେବଳ ବହି ସଂଖ୍ୟା ବଢ଼ିବ ନାହିଁ, ଏକ ମନୋଜ୍ଞ ଶିଶୁ ସାହିତ୍ୟ ସୃଷ୍ଟି ଲାଗି ସହାୟକ ହେବ ।

ଏହି ବହି ମେଳାରେ ଅଭିଭାବକମାନେ ଯଦି ଭଲ ବହି କିଣି ନେଇ ପଢ଼ିବେ ତାହା ମଧ୍ୟ ସାନ ପିଲାମାନଙ୍କ ଉପରେ ଏକ ପ୍ରଭାବ ପଡ଼ିବ । ଏହା ହିଁ ମଧ୍ୟ ପୁସ୍ତକ ମେଳାର ଆଉ ଏକ ଅଙ୍ଗ । ତେଣୁ ବହି ଆମର ଏକମାତ୍ର ସାଥୀ । ବହି କେବେ ହେଲେ ପୁରୁଣା ହୋଇ ଯାଏ ନାହିଁ । ଲେଖକ, ପାଠକ ଓ ପ୍ରକାଶକ ଏହି ତିନିଗୋଟି ମାଧ୍ୟମରେ ତ୍ରିବେଣୀ ସଙ୍ଗମ ଯେ, କେତେ ଉପାଦେୟ କଥା ତାହା ସମସ୍ତେ ଉପଲବ୍ଧ କରିବା କଥା । କବି ଓମର ଖେୟାମ କହିଯାଇଛନ୍ତି- ରୁଟି ଶେଷ ହୋଇଯିବ, ମଦ ଶେଷ ହୋଇଯିବ କିନ୍ତୁ ବହି କେବେହେଲେ ଶେଷ ହେବ ନାହିଁ ।



# ବହି ସହ ଦିନେ, ସବୁ ଦିନ

## ସୌରୀନ୍ଦ୍ର ବାରିକ

ଆଜି ବି ମନେ ଅଛି ସେଦିନର କଥା । ବାପା ମୋ ପାଇଁ କଟକରୁ ବହିଟିଏ ଆଣିଥିଲେ । ବହିଟିର ନାମ 'ଡନ୍ କୁଇକ୍ସୋଟ୍' । ବହି ସହ ଆହୁରି ଅନେକ ଜିନିଷ ବି ଆଣିଥିଲେ । ସେ ସବୁର କଥା ଆଜି ମନେ ନାହିଁ । କିନ୍ତୁ ସେ ବହିଟିର କଥା ମନ ଭିତରେ ଏବେ ବି ସତେଜ ଅଛି । ଆଖି ଆଗରେ ଜଳ ଜଳ ଦିଶି ଯାଉଛି ସେ ବହିଟିର ଛବି । କାରଣ ସେ ବହିଟି ଗୋଟିଏ ଆକର୍ଷଣ ହୋଇ ଆସିଥିଲା, ମାତ୍ର ଏହି ଆକର୍ଷଣରେ ତାହା ସୀମିତ ହୋଇ ରହି ନଥିଲା । କାଳକ୍ରମେ ସେ ବହିଟି, ତା' ସହ ମୋ' କିଶୋର ମନର ପରିଚୟ ଓ ସଂପର୍କ, ମୋ' ପାଖରେ ଗୋଟିଏ ଜଗତ ଭିତରକୁ ଛବିଳ ରାସ୍ତାଟିଏ ହୋଇଗଲା; ମୋ' ଚେତନାକୁ ଖାଲି ପ୍ରଭାବିତ କଲା ନାହିଁ, ମୋ' ଚେତନାର ଅଂଶଟିଏ ହୋଇଗଲା । ମୋର 'ମୁଁ ପଣ'କୁ ପ୍ରଭାବିତ କରିବା ସଂଗେ ସଂଗେ ଋଦ୍ଧିମନ୍ତ କରିବାକୁ ଲାଗିଲା । ମୋ' ଅହଂ ସହ ଅଙ୍ଗାଙ୍ଗୀ ହୋଇଗଲା ।

ଆଜି ବି ମନେ ଅଛି ମୁଁ ବହିଟିକୁ ଧରି କେମିତି ଘରର ଗୋଟିଏ ନିରୋଳା କୋଣକୁ ଚାଲି ଯାଇଥିଲି । ପ୍ରଥମେ ନ ପଢ଼ି ଖାଲି ପୃଷ୍ଠା ପରେ ପୃଷ୍ଠା ଓଲଟାଇ ତହିଁରେ ଥିବା ଛବିଗୁଡ଼ିକୁ ଦେଖିବାରେ ଲାଗିଲି । ଛବିଗୁଡ଼ିକ କେବଳ ଛବି ଭାବରେ ଆକର୍ଷଣ କରିବା ସଂଗେ ସଂଗେ ବହିଟିକୁ ପଢ଼ିବା ପାଇଁ ନିମନ୍ତ୍ରଣ କଲା । ମୋ' ମନରେ ଅଦ୍‌ଭୁତ ଏକ କୌତୂହଳ ସୃଷ୍ଟିକଲା । ମୁଁ ପଢ଼ିବା ଆରମ୍ଭ କଲି । ବାସ୍ ମୋ' ଆଗରେ ଫିଟିଗଲା ଗୋଟିଏ ନୂଆ ପୃଥିବୀର ଅଜଣା ଦିଗନ୍ତ । ଖାଲି ନୂତନତା ଆଉ ବିସ୍ମୟରେ ଭରା ଗୋଟିଏ ସ୍ୱପ୍ନର ଜଗତ; ଯେଉଁଠି ମିଛ କିଛି ନାହିଁ । ଅସମ୍ଭବ କିଛି ନାହିଁ । ସବୁ ସତ, ସବୁ ସମ୍ଭବ । ମୁଁ ପଢ଼ି ଚାଲିଥିଲି । ଖାଲି ପାଇବା ଭିତରେ ମୁଁ ନିଜକୁ ହଜାଇ ଦେଉଥିଲି । ସେ ବହି ହୋଇ ଯାଉଥିଲି । ଆଉ ସେପରି ହେବା ଭିତରେ ମୁଁ ନୂଆ 'ମୁଁ' ଟିଏ ହୋଇ ଯାଉଥିଲି । ସେଇ ନୂଆ 'ମୁଁ'ଟି ଆଉ କେବେ ପଛକୁ ଫେରିନି । ତା'ର ରୁକୁଣାପଣ କିନ୍ତୁ ପଛ ପାସୋରା ନୁହେଁ । ସେ ତା' ଅତୀତକୁ କେବେ ଭୁଲି ନାହିଁ, ମାତ୍ର ତା' ପାଖରେ କେବେ ଅଟକି ଯାଇନି । ତେଣୁ ବହି ପଢ଼ାର ପ୍ରଥମ ପାହାଚରେ ଏହି ନୂଆ ପୁରୁଣାର ସଂପର୍କ । ଏହି ସଂପର୍କରେ ଗଢ଼ି ଉଠେ ଏକ ଆବିଷ୍କାର ବୋଧ । ଏହି ଆବିଷ୍କାର ଏକ ନୂଆ ଅନୁଭବର । ନୂଆ ପୁଲକର । ଏକ ନୂଆ 'ମୁଁ ପଣ'ର ।

ଘରର ନିରୋଳା କୋଣରେ ଚୁପ୍‌ଚାପ୍ ବସି ବହିଟିକୁ ପଢ଼ି ଚାଲିଛି । ପଢ଼ି ଚାଲିଲି ତ ପଢ଼ି ଚାଲିଲି । ମୋତେ ସମୟ ଜଣା ପଡ଼ିଲାନି, ଭୋକ ଲାଗିଲାନି । ପକେଟ୍‌ରେ ଥିବା ଚଣାଭଜା ସେହିପରି ଅଛୁଆଁ ରହିଗଲା । ମୁଁ ଜାଣି ପାରିଲିନି ମୁଁ ନିଜେ ଥିଲି ନା ନାହିଁ । ମୋ ଆଗରେ ଡନ୍ କୁଇକ୍ସୋଟ୍‌ର ଜଗତ । ତା' ସାଙ୍ଗ ସାଙ୍କୋ ପାଞ୍ଜାର ଜଗତ । ସେମାନଙ୍କର ଆଡ୍‌ଭେଞ୍ଚର ଅନୁଭୂତି । ବହି ସରିଲା ବେଳକୁ ମୁଁ ଡନ୍ କୁଇକ୍ସୋଟ୍‌ର ଜଗତ ସହ ଏକ ହୋଇ ସାରିଥିଲି । ସବୁ ଟେଲିଫୋନ୍ ଖୁଣ୍ଟି, ଅସୁର ପରି ଦିଶୁଥିଲେ । ସବୁ ଛେଳି ପଲ ଦିଶୁଥିଲେ ଭିନ୍ନ ପ୍ରକାରର । ମୁଁ ସେତେବେଳେ ଜାଣି ନଥିଲି ଏହା ପାଇବା ନା ଭୁଲିବା । ଜୀବନକୁ ସାମ୍ନା କରିବା ନା ସ୍ୱପ୍ନ ଜଗତକୁ ପଳେଇବା ।

ଆଜି ଯେତେବେଳେ ସେଦିନର ସେହି କଞ୍ଚି ଅନୁଭୂତି କଥା ଭାବେ ଅନେକ ପ୍ରଶ୍ନ ମନ ଭିତରେ ଉଠେ । ପ୍ରଶ୍ନ ଉଠେ ବହିର ପ୍ରଭାବ କଥା, ଜୀବନ ସହ ତା'ର ସଂପର୍କ କଥା । ତହିଁରୁ ମିଳୁଥିବା ଆନନ୍ଦର କଥା । ସେଦିନ ପିଲା ମନର ନିରୀହତା ନେଇ ଡନ୍ କୁଇକ୍ସୋଟ୍‌ର ଅନୁଭୂତିକୁ ଉପଭୋଗ କରିଥିଲି । ତା'ର ଅନୁଭୂତି ମୋ ପାଖରେ ଖାଲି ଖୁସିର ଉତ୍ସ ହୋଇଥିଲା । ତା'ର ତଥାକଥିତ ପାଗଳାମୀରେ ମୁଁ ଆନନ୍ଦରେ କୁରୁଳି ଉଠିଥିଲି; ମାତ୍ର ମୋ ଅଜାଣତରେ ତା' ସହ ନିଜକୁ ସାମିଲ ମଧ କରିଥିଲି । ତା' ସହ ଏକାତ୍ମତା ମୋତେ କେମିତି ସମ୍ବେଦନଶୀଳତା ଶିଖାଇଥିଲା । ଆଉ ତା'ରି ପରି ଏକ ସରଳ ମନ ନେଇ ବାସ୍ତବତା ସହ ସଂପର୍କ ସ୍ଥାପନ କରିବାର ଭିତ୍ତିଭୂମି ଗଢ଼ି ଦେଇଥିଲା । ଏପରି ସମ୍ବେଦନଶୀଳ ସଂପର୍କ ସ୍ଥାପନ ହିଁ

ଜୀବନର ସବୁଠାରୁ ବଡ଼ କଥା । ଏ ସଂପର୍କ ଜଣକୁ ଉଦାର କରେ, ବିଚାରବୋଧରେ ଏକ ପ୍ରକାର ଦୋସର ଦୂରତା ଗଢ଼ି ତୋଳେ । ଯା'ଫଳରେ ସଂପର୍କରେ ଯାନ୍ତ୍ରିକତା ଆସେ ନାହିଁ । ବିଚାରରୁ ସଂବେଦନା ଲୋପ ପାଇ ଯାଏ ନାହିଁ । ଅର୍ଥାତ୍ ଶିଶୁ ସୁଲଭ ନିରୀହତା ବାସ୍ତବତାର ଚାପରେ ନଷ୍ଟ ହୁଏ ନାହିଁ, ରୂପାନ୍ତରୀତ ହୁଏ ଉଷ୍ଣତାରେ । ସବୁ ସହ ନିଜକୁ ଯୋଡ଼ି ନିଜ ଭାବରେ ତାକୁ ବିଚାର କରିବା ଶିଖାଇ ଥାଏ । ଅର୍ଥାତ୍ କେବଳ ଯୁକ୍ତି ଅବା ତତ୍ତ୍ୱ ଦ୍ୱାରା ପ୍ରଭାବିତ ନହୋଇ ଅନ୍ୟ ପାଇଁ ଟିକିଏ ଭାବ ଦଗ୍ଧ ହେବା, ଅନ୍ତରର ସହ ଆପଣାର କରିବା ଶିଖାଇ ଥାଏ । ଅର୍ଥାତ୍ ବହି ପାଠକର ମନକୁ ଉଦାର ଉଷ୍ଣତାରେ ଋଦ୍ଧିମନ୍ତ କରିଥାଏ ।

ମନର ଏହି ନିରୀହପଣକୁ ବହି ନଷ୍ଟ ହେବାକୁ ଦିଏ ନାହିଁ । ଏହି ନିରୀହପଣ ବୋକାମୀ ନୁହେଁ, ଅଜ୍ଞତା ନୁହେଁ, ଏପରିକି ଜଟିଳତାବିହୀନ ନୁହେଁ । ଏହା ଏକ ପ୍ରକାର କୋମଳତା, ଏକ ପ୍ରକାର ସରଳତା, ଏକ ପ୍ରକାର ଖୋଲା ପଣ । ଏପରିକି ଏକପ୍ରକାର ସାହସିକତା, ଯାହା ସତ କହିବାକୁ ପଛାଏ ନାହିଁ । ଏହା ହିଁ ଶିଶୁର ଈଶ୍ୱରପଣ । ପର ଅବସ୍ଥାରେ ଏହା ମାନବିକତାରେ ପରିଣତ ହୁଏ । ପରିଣତ ହୁଏ ଅସଂକୀର୍ଣ୍ଣତାରେ । କାରଣ ବହିପଢ଼ା ଖାଲି ଜ୍ଞାନ ଦିଏ ନାହିଁ, ବୁଦ୍ଧିକୁ ଋସାଣିତ କରେ ନାହିଁ, ଏହା ହୃଦୟଟିଏ ମଧ ଗଢ଼ି ଦିଏ । ସମସ୍ତଙ୍କୁ କୋଳେଇ ନେବାର ମନୋଭାବ ଗଢ଼ି ଦିଏ । ତେଣୁ ବହି କେବେ କାହାରିକୁ ଏକାକୀ କରି ଦିଏ ନାହିଁ । ନିଃସଙ୍ଗ ମଧ କରି ଦିଏ ନାହିଁ । ସବୁବେଳେ ସେ ପାଠକ ଆଗରେ ନୂଆ ଜଗତର ଦିଗନ୍ତ ଦେଖାଇ ଦିଏ । ଦିଗହରା ନାବିକ ହଠାତ୍ କୂଳର ଚିହ୍ନ ଦେଖିଲା ପରି ପାଠକ ନୂଆ ଅନୁଭବର ଜଗତର ଠାବ ପାଇଯାଏ । ପାଇଯାଏ ବି ନୂଆ ବନ୍ଧୁ, ନୂଆ ସଂପର୍କ ଏମିତିକି ନୂଆ ଆଡଭେଞ୍ଚର୍ । ଫଳରେ ନିଃସଙ୍ଗ ହୋଇ ହତାଶାର ସ୍ୱୀକାର ହେବା ସମ୍ଭବ ହୁଏନି । ତେଣୁ ବହି ଆଶାର ଆଲୋକ । ଜୀବନକୁ ସାମ୍ନା କରିବାର ଶକ୍ତି । ଏହା ଏକ ପରମ ବନ୍ଧୁ, ମହାସଂପର୍କର ଉଷ୍ଣତା । ଏହା ଦୁଃଖକୁ ଭୁଲାଇ ଦିଏନି, ଏହା ଯୁଝିବାକୁ ଶକ୍ତି ଦିଏ । ଏହି ଶକ୍ତି ମିଳେ ବହି ଦ୍ୱାରା ଗଢ଼ି ଉଠିଥିବା ଖୋଲା ଉଦାର ମନରୁ । ତେଣୁ ପ୍ରତିଟି ବହି ପଢ଼ି ଉପଭୋଗ କରିବା ପଛରେ ଥାଏ ପ୍ରଥମ ବହି ପଢ଼ାର ସେଇ କିଶୋରଟିର କୌତୂହଳୀ ନିରୀହ ମନଟି । ସବୁ ବହି ପ୍ରଥମ ବହି; ସବୁ ପଢ଼ା ପ୍ରଥମ ପଢ଼ା । ତେଣୁ ବହି ପଢ଼ାର ଆନନ୍ଦ ନିରୀହ ଆନନ୍ଦ । ଏକ ସରଳ ଜଟିଳତା ପୁଣି ଜଟିଳ ସରଳତା ।

ଏହି ଜଟିଳତା ଆସେ ଅନୁଭବର ବିଭିନ୍ନତା ଓ ଜଟିଳତା ସହ ବୟସ ବୃଦ୍ଧିର ପକ୍ୱତା ଯୋଗୁଁ । ମାତ୍ର ବହି ଏହି ଜଟିଳତା ଭିତରେ ସରଳ ନିରୀହ ଆନନ୍ଦଟିକୁ ବଞ୍ଚାଇ ରଖିଥାଏ ତା'ର ଭାବଦଗ୍ଧ ଉଷ୍ଣତା ଦ୍ୱାରା । ଏହା ହିଁ ବହିର ସବୁଠାରୁ ବଡ଼ ଦାନ । ଏହା ମନଟିର ନିଜସ୍ୱତାକୁ ମାର୍ଜିତ କରିବା ସଂଗେ ସଂଗେ ଏହାକୁ ସୁରକ୍ଷିତ କରି ରଖିଥାଏ । ଏକ ଆବେଗ ଦଗ୍ଧ ବିଚାରବୋଧରେ ପରିଣତ କରୁଥାଏ । ଏହା ଯେପରି ଏକ ପରିବର୍ତ୍ତିତ ଅପରିବର୍ତ୍ତନୀୟତା । ଏହି ଚେତନାରୁ ପ୍ରକାଶିତ ହୁଏ ପାଠକର ଜୀବନ ତଥା ବାସ୍ତବତା ପ୍ରତି ପ୍ରତିକ୍ରିୟା । ଏ ପ୍ରତିକ୍ରିୟା ଅନ୍ୟର ପ୍ରତିଧ୍ୱନି ନୁହେଁ, ନିଜ ଅହଂର ବିଚାର ପ୍ରକାଶ । ତା'ର ସହିବା ପୁଣି ପ୍ରତିବାଦ କରିବାର ନିଜସ୍ୱ ଶକ୍ତି । ସେ ତନ୍ କୁସ୍ତି ସହ ବାସ୍ତବତା ସହ ମୁକାବିଲା କରିବାକୁ ବାହାରିପଡ଼େ, ନିଜସ୍ୱ ଢଙ୍ଗରେ । ତାକୁ ଶକ୍ତି ଦିଏ ତା'ର ଅହଂବୋଧ, ଯାହା ପୁସ୍ତକ ପଠନ ଦ୍ୱାରା ମାର୍ଜିତ, ଋଦ୍ଧିମନ୍ତ । ପୁସ୍ତକ ମାନସିକ ଶକ୍ତି ଯୋଗାଏ । ସତ୍ୟକୁ ନିଜ ଭାବରେ ଦେଖିବାର ଦୃଷ୍ଟିଟି ଦେଖାଏ । ଯୁଦ୍ଧ କବିତା ପଢ଼ି, ଟ୍ରେଞ୍ଚ ଭିତରେ ମଧ ସେ ଯୁଦ୍ଧକୁ ଅର୍ଥହୀନ 'nonsense' ବୋଲି କହିବାର ହିମ୍ମତ ରଖିପାରେ ।

ସେଥିପାଇଁ ତ ବହି ବିପ୍ଳବ ସୃଷ୍ଟି କରେ । ସ୍ଲୋଗାନ ତିଆରି କରି ନୁହେଁ, ଏକ ନୂଆ ସ୍ୱଚ୍ଛ, ସରଳ, ସତ୍ୟଶୀଳ ମାନସିକତା ଗଢ଼ି । ତେଣୁ ଗୋଟିଏ ବହିରେ କାହାଣୀ ଭିତରେ ଗୁମ୍ଫିତ ହୋଇଯାଏ ଗୋଟିଏ ଯୁଗର ଅନୁଭବ । ଗୋଟିଏ ସମ୍ବେଦନଶୀଳ ମନର ବୈର୍ଯ୍ୟକ୍ତିକ ପ୍ରତିକ୍ରିୟା । ଏହାକୁ ହିଁ ତ କୁହାଯାଏ ବିପ୍ଳବ ।

ଆଜିର ବେପାରୀ ଯୁଗରେ ମଣିଷ ବେପାରର ପଣ୍ୟ ହୋଇ ଯାଇଛି ।

ସେ ଜୀବନକୁ ଟିଭିର ବିଜ୍ଞାପନ ଜରିଆରେ ଦେଖୁଛି । ଫଳରେ ଆଜିର ଦୁଃଖ ହେଉଛି ମଣିଷର 'ଆତ୍ମ ବିସ୍ମୃତି' । ପ୍ରତ୍ୟେକ ବହି ଏହି ବିସ୍ମୃତି ବିରୁଦ୍ଧରେ ସ୍ୱର । କିଶୋର ଜୀବନର ପ୍ରଥମ ବହିପଢ଼ାର ଆତ୍ମ ବିସ୍ମୃତି ଆଲୋଚିତ ବିସ୍ମୃତି ବିରୁଦ୍ଧରେ ପ୍ରଥମ ପଦପାତ । କିଶୋର କାଳର ବହି ଜଗତ ଭିତରେ ଆତ୍ମବିସ୍ମୃତି ତ ଆତ୍ମାବିଷ୍କାରର ପ୍ରଥମ ଝଲକ । ଏହି ଝଲକ ପୂର୍ଣ୍ଣତା ଲାଭ କରେ ଏକ ଅନାବିଳ ଅହଂବୋଧରେ ଯାହା ବାସ୍ତବତା ସହ ବ୍ୟକ୍ତିର ସଂପର୍କକୁ ଜନ୍ମ ନିଏ, ଯେଉଁ ସଂପର୍କକୁ ବହି ଗଭିମନ୍ତ ଓ ଶାଣିତ କରେ । ଏହା ହିଁ ବହିର ସବୁଠାରୁ ବଡ଼ ଦାନ - ଜ୍ଞାନ । ଜ୍ଞାନ-ଅହଂନାହଂର ସଂପର୍କର । ଏହା ହିଁ ବହିର ନୀତିବୋଧ, ଆଧ୍ୟାତ୍ମିକତା ।

ଏହି ଅବୋଧ ମଣିଷକୁ କେବଳ ନିଃସଙ୍ଗତା ନୁହେଁ, ସୀମୀତତା ପୁଣି ଅର୍ଥହୀନତାକୁ ମୁକ୍ତି ଦିଏ । ସାରା ବିଶ୍ୱକୁ ନିଜର କରେ । ଏହା ଭିତରେ ସମୟ ତା'ର ଚିରନ୍ତନତାକୁ ବନ୍ଦୀ କରେ । ଆଜିର ଜଗତରେ ଦ୍ୱନ୍ଦ ହେଉଛି ଯୁକ୍ତିର ଅଯୌକ୍ତିକତା ସହ ଯୁକ୍ତିହୀନତାର ଅର୍ଥହୀନତା ଭିତର । ଏହାର ସମାଧାନ ମିଳେ ବହି ପଢ଼ାରୁ ଯାହା ମନକୁ ଯୁକ୍ତିପ୍ରବଣତାରୁ ମୁକ୍ତି ଦେଇ ସରଳ ଯୁକ୍ତି ଦକ୍ଷତାରେ ପରିଣତ କରେ । ଏହା ହିଁ ବହିର ଆନନ୍ଦ, ତା'ର ଦାନ ।

ଅନେକ ଦିନ ତଳେ ସେହି କିଶୋରଟିକୁ 'ଡନ୍ କ୍ୱିକ୍ସୋ' ଯେଉଁ ଜଗତ ଭିତରକୁ ଭୁଲାଇ ନେଇ ଥିଲା ତାହା ଆଜି ଅନ୍ୱେଷାରେ ପରିଣତ ହୋଇଛି । ଅନ୍ୱେଷା ଅହଂର, ଜୀବନବୋଧର । ଏ ଅନ୍ୱେଷା ପୁଣି ଏକ ନିୟଂତ୍ରିତ ମନ ନେଇ ନୁହେଁ, ଏକ ସରଳ , ମୁକ୍ତ ଉଦାର ମନ ନେଇ । ଯେଉଁ ମନ ନେଇ ଡନ୍ କ୍ୱିକ୍ସୋ ବାହାରିଥିଲା ତା'ର ଆଡ୍‌ଭେଞ୍ଚରରେ । ସେହି ମନଟି ତ ବହିର ଦାନ । ସେହି ମନଟିକୁ ଅତୁଟ ରଖିବାର କ୍ଷମତା ମଧ୍ୟ ସେହି ବହିର ଦାନ । ବହି ମହାଦାନୀ । ତା' ଦାନର ସୀମା ନାହିଁ ।



# ପୁସ୍ତକ ମେଳା ଓ ଭାଷା-ସାହିତ୍ୟ

ଦେବପ୍ରସାଦ ଦାଶ

''ତମେମାନେ ଭାବୁଥିବ ଯେ ଆମେ ଆବଶ୍ୟକତା ଠାରୁ ଅଧିକ ଅନୁଗୃହୀତ ଯଦିଓ ଆମେ ସବୁ ତୃତୀୟ ଶ୍ରେଣୀର ଲେଖକ, କାହିଁକି ନା ଆମେ ଇଂରାଜୀରେ ଲେଖୁ । ଆସ, ବାସ୍ତବତାକୁ ଦେଖିବା । ଆମେ ଯେଉଁ ଭାରତୀୟ ଲେଖକମାନେ ଇଂରାଜୀରେ ଲେଖୁଛୁ, ସବୁବେଳେ (ତମ ଅପେକ୍ଷା) ଆମକୁ ଅଧିକ ଲୋକ ପଢ଼ିବେ ଏବଂ ତମେ ସମସ୍ତେ ମିଶି ଯାହା ରୟାଲ୍‌ଟି ପାଉଥିବ, ତା' ଠାରୁ ଅଧିକ ରୟାଲ୍‌ଟି ଆମେ ଘରକୁ ନେବୁ । ତମେ ସବୁବେଳେ ଆମକୁ ପଢ଼ିବ, ଆମେ କଦବା କ୍ୱଚିଦ୍ ତମକୁ ପଢ଼ିପାରୁ ।'' ନିକଟରେ ଦିଲ୍ଲୀଠାରେ ଅନୁଷ୍ଠିତ 'ଘରେ, ପୃଥିବୀ ଭିତରେ' (ଆଟ୍ ହୋମ୍ ଇନ୍ ଦି ୱାର୍ଲ୍ଡ) ଶୀର୍ଷକ ସାହିତ୍ୟ ସମ୍ମିଳନୀରେ ଖୁସୱନ୍ତ ସିଂହଙ୍କ ଏହି ସମ୍ବୋଧନ ଥିଲା 'ଭାଷା' ଲେଖକମାନଙ୍କୁ । ସେ ଆହୁରି ମଧ କହିଥିଲେ ଯେ ଭାରତୀୟ ଆଞ୍ଚଳିକ ଭାଷାଗୁଡ଼ିକର ଶବ୍ଦ ଭଣ୍ଡାର ଖୁବ୍ ସୀମିତ, ଇଂରାଜୀ ଭାଷା କ୍ଷେତ୍ରରେ ଏଭଳି ସମସ୍ୟା ନାହିଁ । ତାଙ୍କୁ ସମର୍ଥନ କରି ନୋବେଲ୍ ବିଜେତା ସାର୍ ବିଦ୍ୟାଧର ନଇପଲ୍ କହିଥିଲେ- ''ତମମାନଙ୍କ ପାଇଁ ଆମେ ପାଠକ ଯୋଗାଡ଼ି ପାରିବୁ ନାହିଁ । ତମକୁ ନିଜେ ନିଜେ ତମ ପାଠକମାନଙ୍କୁ ଖୋଜିବାକୁ ପଡ଼ିବ ।''

ଗତ କିଛିବର୍ଷ ଧରି ଇଂରାଜୀ ଭାଷାରେ ଲେଖୁଥିବା ଭାରତୀୟ ଲେଖକମାନେ ଆଞ୍ଚଳିକ ଭାଷାର ଲେଖକମାନଙ୍କ ପ୍ରତି ଏପରି ଅଶାଳୀନ ମନ୍ତବ୍ୟ ଦେଇ ଆସୁଛନ୍ତି । ସଇମାନ୍ ରୁସିଦ୍ ତ ବିଭିନ୍ନ ଭାରତୀୟ ଆଞ୍ଚଳିକ ଭାଷାରେ ସେଭଳି କିଛି ଲେଖାଯାଉ ନାହିଁ ବୋଲି ଏକ ଅତି ବିବାଦୀୟ ମନ୍ତବ୍ୟ ଦେଇଥିଲେ କିଛିଦିନ ତଳେ । ଏହି ଇଂରାଜୀ ଭାଷା ଲେଖକମାନେ ଆଞ୍ଚଳିକ ଭାଷା ସାହିତ୍ୟକୁ ପଢ଼ିବା ପରେ ଏଭଳି ମନ୍ତବ୍ୟ ରଖୁଛନ୍ତି ବୋଲି କହିହେବ ନାହିଁ । ବରଂ ଏମାନଙ୍କ ମନ୍ତବ୍ୟ 'ଭାଷା ସାହିତ୍ୟ' ସଂପର୍କରେ ସେମାନଙ୍କ ଅଜ୍ଞତାକୁ ପ୍ରକାଶ କରୁଛି ନିଃସନ୍ଦେହରେ । ତା'ଛଡ଼ା ଭାଷା ଲେଖକମାନେ ଏମାନଙ୍କ ସ୍ୱୀକୃତିକୁ ଚାହିଁ ବସିଛନ୍ତି କି ?

ବିଦେଶୀ ଭାଷାର ମୋହରେ ପଡ଼ିଥିବା ଏହି ଲେଖକମାନଙ୍କ ପୃଷ୍ଠଭୂମି କ'ଣ ? ପବ୍ଲିକ୍ ସ୍କୁଲ୍‌ରେ ପାଠପଢ଼ା, କିଛିଦିନ ପାଇଁ କ୍ଷମତା ଅଳିନ୍ଦରେ ଚାକିରି, ତା' ପରେ କିଛି ଆନ୍ତର୍ଜାତିକ ସ୍ତରର ବୃତ୍ତି, ଅତି ବିଳାସପୂର୍ଣ୍ଣ ଜୀବନଶୈଳୀ ଓ ଶେଷରେ ପାଶ୍ଚାତ୍ୟ ପାଠକଙ୍କ ପାଇଁ ନିଜ ଦେଶର ରୋଜନାମଚା ଓ ସଂସ୍କୃତି ସଂପର୍କରେ କିଛି ନିମ୍ନ ଧରଣର ମନ୍ତବ୍ୟ ସହ ତଥାକଥିତ ବିଶ୍ୱ ବଜାର ନିମନ୍ତେ ପ୍ରସ୍ତୁତ ବରାଦଦିଆ ବହି । ନୀରଦ ସିଂ ଚୌଧୁରୀ ଓ ସାର୍ ବିଦ୍ୟାଧର ଏସ୍. ନଇପଲ ତ ଭାରତକୁ ଗାଳି ଦେଇ ଦେଇ ପାଶ୍ଚାତ୍ୟ ପାଠକଙ୍କ ଅନୁଗ୍ରହ ପାଇଛନ୍ତି । ଏମାନଙ୍କୁ ମହାତ୍ମା ଗାନ୍ଧିଙ୍କ ଭାଷାରେ 'ଡ୍ରେନ୍ ଇନିସ୍‌ପେକ୍ଟର' ବା ନର୍ଦ୍ଦମା ନିରୀକ୍ଷକ କହିଲେ ଅତ୍ୟୁକ୍ତି ହେବ ନାହିଁ । ବିକ୍ରମ ସେଠ୍, ଶଶି ଥରୁରେ ଓ ପବନ କେ. ବର୍ମାଙ୍କ ଭଳି ପୂର୍ବତନ ବା ବର୍ତ୍ତମାନର ବ୍ୟୁରୋକ୍ରାଟ୍‌ମାନେ ସହରୀ ଜୀବନର କଥା କିଛି ହିଁ କହନ୍ତି । ଅରୁନ୍ଧତୀ ରାୟଙ୍କ ଗ୍ରହଣଯୋଗ୍ୟତା ଏମାନଙ୍କ ଠାରୁ କିଛି ଅଧିକ ନିଶ୍ଚିତ ଓ ସେ ଭାଷା ସାହିତ୍ୟ ସଂପର୍କରେ କେବେହେଲେ ଅରୁଚିପୂର୍ଣ୍ଣ ମନ୍ତବ୍ୟ ଦେଇ ନାହାନ୍ତି ଏ ପର୍ଯ୍ୟନ୍ତ । ଫୁଲନ୍ ଦେବୀ, ନର୍ମଦା ନଦୀବନ୍ଧ, ତେହେରି ଜଳବିଦ୍ୟୁତ୍ ଯୋଜନା, କୋର୍ଟ ଅବମାନନା, ପରମାଣୁ ବିସ୍ଫୋରଣ, ସେପ୍ଟେମ୍ବର ଏଗାର ଇତ୍ୟାଦି ପ୍ରସଙ୍ଗ ଉପରେ ତାଙ୍କର ଭାବପ୍ରବଣ ସଂପୃକ୍ତି ଅନ୍ତତଃ କେତେକାଂଶରେ ତାଙ୍କୁ ଗ୍ରହଣଯୋଗ୍ୟ କରାଇଛି ସାଧାରଣ ଲୋକଙ୍କ ପାଖରେ । ଆର୍.କେ. ନାରାୟଣ ମଧ ତାଙ୍କ ତୃଣମୂଳକୁ ଛାଡ଼ି କିଛି ଲେଖି ନଥିଲେ ।

କିନ୍ତୁ ଖୁସୱନ୍ତ ସିଂହ ? 'ଟ୍ରେନ୍ ଟୁ ପାକିସ୍ତାନ' ବ୍ୟତୀତ ତାଙ୍କର କୌଣସି ସୃଷ୍ଟିକୁ କ୍ଲାସିକ୍ କୁହାଯାଇପାରିବ ନାହିଁ । ତାଙ୍କର ଗ୍ରହଣଯୋଗ୍ୟତା କେବଳ ଅତି ଶିକ୍ଷିତ ଓ ଉଚ୍ଚ ମଧ୍ୟବର୍ଗର କିଛି ମୁଷ୍ଟିମେୟ ଲୋକଙ୍କ ପାଖରେ ଯେଉଁମାନେ ଗୋଟିଏ ହାତରେ ସ୍କଚ୍ ବୋତଲ ଓ ଅନ୍ୟପଟେ ଅର୍ଦ୍ଧନଗ୍ନ ସୁନ୍ଦରୀ ନାରୀ ସହିତ ପଞ୍ଚତାରକା ହୋଟେଲରେ ସନ୍ଧ୍ୟା

ବିତାଇବାକୁ ଯାଆନ୍ତି । ଖୁସ୍‌ୱନ୍ତ ଐତିହାସିକ ତଥ୍ୟକୁ ମଧ ବିକୃତ କରନ୍ତି ବୋଲି ତାଙ୍କ ସଦ୍ୟ ପ୍ରକାଶିତ ଆତ୍ମଜୀବନୀ 'ଟ୍ରୁଥ୍, ଲଭ୍ ଆଣ୍ଡ ଏ ଲିଟିଲ ମାଲିସ୍' ପଢ଼ିସାରି ଲେଖିଛନ୍ତି ଡଃ ରଫିକ୍ ଜକାରିଆ । ମାନେକା ଗାନ୍ଧି ତ ଖୁସ୍‌ୱନ୍ତଙ୍କ ବିରୋଧରେ ମକଦ୍ଦମା ଲଢୁଛନ୍ତି ଏହି ବହିକୁ ନେଇ ।

ମନେହୁଏ ଭାରତରେ ଇଂରେଜୀ ପଢ଼ି ବୁଝିପାରୁଥିବା ଲୋକ ଖୁବ୍‌ଗୁଡ଼ାଏ ଅଛନ୍ତି ଓ ସେମାନେ ସମସ୍ତେ ତାଙ୍କୁ ପଢ଼ନ୍ତି ବୋଲି ଖୁସ୍‌ୱନ୍ତ ବିଶ୍ୱାସ କରନ୍ତି । ଏହି ସଂଖ୍ୟା ଭାଷା ସାହିତ୍ୟର ପାଠକ ସଂଖ୍ୟା ଠାରୁ ଅଧିକ ବୋଲି ସେ କେମିତି ବୁଝିପାରିଲେ ଜଣାପଡୁ ନାହିଁ । ଆନ୍ତର୍ଜାତିକ ଇଂରାଜୀ ବହିର ବଜାରରେ ଖୁସ୍‌ୱନ୍ତ ଯେ ଆଦୌ ଜଣେ ଚର୍ଚ୍ଚିତ ଲେଖକ ନୁହନ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ । କେଉଁ ହିସାବ ଅନୁଯାୟୀ କୁହାଯାଇପାରିବ ଯେ ନିର୍ଦ୍ଦିଷ୍ଟ ଭୌଗୋଳିକ ସୀମାବଦ୍ଧ ଭାଷାରେ ଲେଖୁଥିଲେ ହେଁ ସୁନୀଲ ଗଙ୍ଗୋପାଧ୍ୟାୟ, ୟୁ.ଆର୍. ଅନନ୍ତମୂର୍ତ୍ତି, ଏମ୍.ଟି. ବାସୁଦେବନ୍ ନାୟାର କିମ୍ବା କ୍ରିଶୋ ସୋବତୀଙ୍କ ଠାରୁ ଖୁସ୍‌ୱନ୍ତଙ୍କୁ ପଢୁଥିବା ପାଠକଙ୍କ ସଂଖ୍ୟା ଅଧିକ ? ସେଥିପାଇଁ 'ଆଟ୍ ହୋମ୍ ଇନ୍ ଦି ୱାର୍ଲ୍ଡ' ଆଲୋଚନାଚକ୍ରରେ ବିଶିଷ୍ଟ କନ୍ନଡ଼ ଲେଖକ ୟୁ.ଆର୍. ଅନନ୍ତମୂର୍ତ୍ତି କହିଥିଲେ- ''ତମେ ଯେଉଁମାନେ ଇଂରାଜୀରେ ଲେଖୁଛ ଆମକୁ ପଢ଼ି ନ ପାର; କିନ୍ତୁ କେବଳ ମୂର୍ଖମାନେ ହିଁ କହିବେ ଯେ ଭାଷା ସାହିତ୍ୟରେ କିଛି ନାହିଁ । ଆମକୁ ଯଥେଷ୍ଟ ଲୋକ ପଢ଼ନ୍ତି ଓ ତମେ ସେଥିପାଇଁ ବ୍ୟସ୍ତ ହେବାର ଆବଶ୍ୟକତା ନାହିଁ । ଆମେ ମାନୁଛୁ ଇଂରାଜୀ ଏକ ଉନ୍ମୁକ୍ତ ଶକ୍ତି ହୋଇପାରେ, କିନ୍ତୁ ଆମେ କେବେ ଚିନ୍ତା କରି ନାହୁଁ ଯେ ଇଂରାଜୀ ଯେକୌଣସି ଆଞ୍ଚଳିକ ଭାଷା ଠାରୁ ବଡ଼ ।''

ବାକି ରହିଲା ରୟାଲଟି ବା ଲାଭାଂଶର କଥା । ଯେକୌଣସି ଭାଷା ସାହିତ୍ୟର ବହିର ମୂଲ୍ୟ ଇଂରାଜୀ ପ୍ରକାଶନ ଠାରୁ ତୁଳନାତ୍ମକ ଭାବରେ ଯଥେଷ୍ଟ କମ୍ । ତଥାପି ଦୀର୍ଘବର୍ଷ ଧରି ବିଭିନ୍ନ ଆଞ୍ଚଳିକ ଭାଷାରେ ବହୁ ଲେଖକ କେବଳ ସାହିତ୍ୟକୁ ନେଇ ବଞ୍ଚିବାର ପ୍ରୟାସ କରି ଆସୁଛନ୍ତି । ତା'ଛଡ଼ା ବହି ଲେଖି କିଏ କେତେ ରୋଜଗାର କଲା ଯେଉଁ ଦିନ ସାହିତ୍ୟ ସର୍ଜ୍ଜନାର ମାପକାଠି ହୋଇଯିବ, ସେଦିନ ଠାରୁ ଲେଖକ ଓ କଂସେଇର ପାର୍ଥକ୍ୟକୁ ଭୁଲିଯିବାକୁ ହେବ ।

ଭାଷା ସାହିତ୍ୟର ସବୁଠାରୁ ବଡ଼ କଥାଟି ହେଲା ଯେ ଏହା ସାଧାରଣ ଲୋକଙ୍କ କଥା, ସେମାନଙ୍କ ନିଜସ୍ୱ ମାଟି, ପାଣି, ପବନର କଥା କହେ । ଫକୀରମୋହନ ହୁଅନ୍ତୁ ବା ପ୍ରେମଚାନ୍ଦ, ଗୋପୀନାଥ ମହାନ୍ତି ହୁଅନ୍ତୁ ବା ମହାଶ୍ୱେତା ଦେବୀ, ହରିବଂଶ ରାୟ ବଚ୍ଚନ ହୁଅନ୍ତୁ ବା ଗୁଲ୍‌ଜାର - ଏମାନଙ୍କ ଅଭିବ୍ୟକ୍ତିର ସ୍ୱର ହେଉଛି ନିଛକ ଭାରତୀୟତା । ଏମାନେ ଯେଉଁ ବଳଦ ଘାଗୁଡ଼ି, ଗାଁ ନଇପଠା, ସୋରିଷଫୁଲର ବାସ୍ନା ଓ ରଙ୍ଗ ଅବିର ଖେଳର ଋତୁ ବିଷୟରେ କହନ୍ତି ସେଥିରୁ ମାଟିର ମହକ ଆସେ । ସେଇ ସୁଗନ୍ଧ କେତେବେଳେ ସ୍ମୃତି ହୋଇଯାଏ ତ ପୁଣି କେତେବେଳେ ପ୍ରେମ, କେତେବେଳେ ଯୌବନ ହୋଇଯାଏ ତ ଆଉ କେତେବେଳେ ସୌନ୍ଦର୍ଯ୍ୟ; କେତେବେଳେ ମା'ର କୋଳ ହୋଇଯାଏ ତ ଅନ୍ୟ ବେଳେ ଆତ୍ମତୋଟା । ଯିଏ ଭାଷା ସାହିତ୍ୟକୁ ବୁଝି ନାହିଁ, ସେ ଭାରତକୁ ବୁଝି ନାହିଁ । ସେ କେବେ ବୁଝିପାରିବ ନାହିଁ ଏହାର ଶହେକୋଟି ମଣିଷଙ୍କ ହର୍ଷ-ବିଷାଦ- ଯୋଗକୁ । ଭାଷା ସାହିତ୍ୟ ଏଇ ମଣିଷମାନଙ୍କ ହୃଦ୍‌ସ୍ପନ୍ଦନର କଥା କହେ, ସେମାନଙ୍କ ନିଃଶ୍ୱାସ ପ୍ରଶ୍ୱାସର କଥା କହେ, ସେମାନଙ୍କ ସ୍ୱପ୍ନ ଓ ସଂଗ୍ରାମର କଥା କହେ ।

ଖୁସ୍‌ୱନ୍ତ କିମ୍ବା ରୁସିଦ୍ ଇତ୍ୟାଦିଙ୍କୁ ଦୋଷଦେଇ ଲାଭ ନାହିଁ । ସେମାନେ ନବ୍ୟ ଉପନିବେଶବାଦୀ । ମା'ର ଭାଷା ଅପେକ୍ଷା ବିଦେଶୀ ପ୍ରେମିକାର ଭାଷା ହୁଏତ ସେମାନଙ୍କୁ ବେଶୀ ଭଲ ଲାଗେ । ସେମାନେ ପଢ଼ିବେ ବୋଲି ନୁହେଁ, ଆମର ସମ୍ଭାରକୁ ବୃହତ୍ ଏକ ପାଠକ ବଜାର ପାଖରେ ପହଞ୍ଚାଇବା ପାଇଁ ଅନୁବାଦ କେତେକାଂଶରେ ସାହାଯ୍ୟ କରିପାରେ । ପ୍ରଧାନମନ୍ତ୍ରୀ ସେହି ଆଲୋଚନାଚକ୍ରକୁ ଉଦ୍‌ଘାଟନ କରି ଅନୁବାଦ ଏକାଡେମୀ ପ୍ରତିଷ୍ଠା କଥା ଘୋଷଣା କରିଛନ୍ତି । ଏହା ବାହାରେ ମଧ ଆଉ କିଛି ହେବା ଆବଶ୍ୟକ ।

କିନ୍ତୁ ପ୍ରଥମେ ଭାଷା ସାହିତ୍ୟ ନିଜ ପାଣିପାଗରେ ବିସ୍ତୃତ ଓ ପ୍ରସାରିତ ହେଉ । ସାହିତ୍ୟ ଏକ ଆକର୍ଷଣ । ଧୀର, ମନ୍ଥର କିନ୍ତୁ ଚରମ ଉନ୍ମାଦନା ପ୍ରଦାନ କରୁଥିବା ଏକ ପ୍ରମତ୍ତ

ଆକର୍ଷଣ । ପଢ଼ଣିପାରିବା ପାଇଁ ସାମାନ୍ୟ ପ୍ରୟାସ ଲୋଡ଼ା । ଥରେ ପଢ଼ଣିଗଲେ ନିସ୍ତାର କାହିଁ ? ମୁକ୍ତି କାହିଁ ?

ବହିମେଳା ଏବେ ପାଣିକୁ ଘୋଡ଼ା ପାଖକୁ ନେଇ ଆସୁଛି । ବହିର ବିପଣୀ ସ୍ନେହୀ ପାଠକମାନଙ୍କୁ ଅପେକ୍ଷା କରି ରହୁଛନ୍ତି । ରଙ୍ଗ ବେରଙ୍ଗର ବହି, ଖୁବ୍ ମଧୁର ବାସ୍ନାର ବହି, ବନ୍ଧୁ ଓ ଆତ୍ମୀୟ ଭଳି ମନେ ହେଉଥିବା ଅତି ପ୍ରିୟ ଅନ୍ତରଙ୍ଗ ବହି । ବ୍ୟବହାରିକ କାରଣ ପାଇଁ ଇଂରାଜୀ ଓ ଅନ୍ୟ ଭାଷାର ଆଦର ରହୁ । ତା' ଭିତରେ କିନ୍ତୁ ନିଜ ଭାଷାଟି ଘନିଷ୍ଠତମ ହୋଇ ରହୁ । ସତରେ କ'ଣ କେହି ବିଶ୍ୱାସ ରଖେ ଯେ ନିଜ ଘରର ହତାକୁ ଦେଖି ନ ଥିବା ଓ ଚିହ୍ନି ନ ଥିବା କେହି ଜଣେ ସାତ ସମୁଦ୍ର ତେର ନଈକୁ ଜଣି ପାରିବ ?

ଏଥର ପୁସ୍ତକ ମେଳାରେ ଖୋଜାଯାଉ ଅକ୍ଷୟ ମହାନ୍ତିଙ୍କ 'ଆର୍ଯ୍ୟ ଦାସର ଆତ୍ମଲିପି', ନଟବର ଖୁଣ୍ଟିଆଙ୍କ 'ବିଂଶ ଶତାବ୍ଦୀର ବିଂଶ ଓଡ଼ିଆ', ଶରତ ମହାନ୍ତିଙ୍କ 'ଗାନ୍ଧି ମଣିଷ', ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ 'ବଙ୍କିମ ରଚନାବଳୀ', ଡଃ ପ୍ରତିଭା ଶତପଥୀଙ୍କ 'ତନ୍ମୟ ଧୂଳି', ବରେନ୍ଦ୍ର କୃଷ୍ଣ ଧଳଙ୍କ 'ଖୋଲା ବିଚାର', ମନୁ ଦାଶଙ୍କ 'ଭୀରୁ ଭାରତ', ଡଃ ସୀତାକାନ୍ତ ମହାପାତ୍ରଙ୍କ 'ସମୟର ଆରପାରି ଓ ଅନ୍ୟାନ୍ୟ ପ୍ରବନ୍ଧ', ଯୁଗଳ କିଶୋର ଦତ୍ତଙ୍କ ଅନୂଦିତ 'ଚଉଦଟି ବଙ୍ଗଳା ଗଳ୍ପ' ଓ ସୁଭାଷ ଶତପଥୀଙ୍କ ଅନୂଦିତ 'ସଂସ୍କାର' । ତଥାପି କେହି କହିବ 'ଭାଷା' ସାହିତ୍ୟରେ କିଛି ଖୋଜିବାର ଓ ପାଇବାର ନାହିଁ ବୋଲି ?



# ପୁସ୍ତକ ତାଲିକା ୨୦୦୧-୨୦୦୨

[ଭୁବନେଶ୍ୱର ପୁସ୍ତକ ମେଳା ତରଫରୁ ବିଭିନ୍ନ ଓଡ଼ିଆ ସମ୍ବାଦପତ୍ରରେ ଦିଆଯାଇଥିବା ଖବର ପଢ଼ି ଓଡ଼ିଶାର ବିଭିନ୍ନ ସ୍ଥାନରୁ ଅନେକ ଲେଖକ, ଲେଖିକା ଓ ପ୍ରକାଶକ ସେମାନଙ୍କର ପୁସ୍ତକ ସଂପର୍କୀୟ ସୂଚନା ପଠାଇଥିଲେ । ସେଗୁଡ଼ିକୁ ଆମେ ସଂକ୍ଷିପ୍ତ ଭାବରେ ସ୍ଥାନିତ କରିଛୁ । ଯେହେତୁ ଲେଖକ, ଲେଖିକା ବା ପ୍ରକାଶକମାନେ ପତ୍ର ମାଧମରେ ବିବରଣୀ ପଠାଇଛନ୍ତି, ଯଦି ଏଥିରେ କୌଣସି ତ୍ରୁଟି ଥାଏ ତେବେ ଭୁବନେଶ୍ୱର ପୁସ୍ତକ ମେଳା କମିଟି ଏଥିପାଇଁ ଦାୟୀ ନୁହନ୍ତି । ଏହି ତାଲିକାକୁ ୨୦୦୧-୨୦୦୨ ମସିହାରେ ଓଡ଼ିଆ ଭାଷାରେ ପ୍ରକାଶିତ (ଅଳ୍ପ କେତୋଟି ଇଂରାଜୀ ପୁସ୍ତକ ସହ) ପୁସ୍ତକର ସଂପୂର୍ଣ୍ଣ ତାଲିକା ଭାବରେ ବିବେଚନା ନ କରିବାକୁ ପାଠକ-ପାଠିକାମାନଙ୍କୁ ଅନୁରୋଧ ।]

| ଲେଖକ | ପୁସ୍ତକର ନାମ | ପ୍ରକାଶକ | ପୃଷ୍ଠା | ମୂଲ୍ୟ |
|---|---|---|---|---|
| ଜ୍ୟୋତିର୍ମୟୀ ମହାନ୍ତି | ତାପ | ସନକ ପବ୍ଲିଶର୍ସ, କଟକ | ୩୨ | ୧୦/- |
| | ଆଲୋକ | ,, | ୩୨ | ୧୦/- |
| ଲାବଣ୍ୟ ଚନ୍ଦ୍ର ସାହୁ | ଗୁଗୁପାଆଁଚି | ଜ୍ୟୋତ୍ସ୍ନାଦେବୀ ସାହୁ, ଭୁବନେଶ୍ୱର | ୩୯ | ୨୫/- |
| ମୃଣାଳ | ଶକ୍ତି | ଶେଫାଳି କମ୍ୟୁନିକେସନ୍, ଢେଙ୍କାନାଳ | ୯୬ | ୪୦/- |
| ଶଙ୍କର ଚରଣ ରାଉତ | ଶ୍ରୀକୃଷ୍ଣ ଲୀଳା ରହସ୍ୟ | | ୬୫ | ୬୫/- |
| ଗିରିଜା ମଞ୍ଜରୀ ପାଢ଼ୀ | ପିଲାଙ୍କ ଛଟାଗୀତ | ଗିରିଜା ମଞ୍ଜରୀ ପାଢ଼ୀ | ୩୬ | ୨୦/- |
| ପବିତ୍ର ମୋହନ ନାୟକ | ଦି ଭଏସ୍ ଅଫ୍ ସାଇଲେନ୍ସ: ସୋନପୁର ଦରବାର ଆଣ୍ଡ ଇଣ୍ଡିଆନ୍ କଲଚର୍ ଟ୍ରାଡିସନ୍ସ | ଓଡ଼ିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର | ୨୫୭ | ୩୦୦/- |
| ଜଗଦୀଶ ଦାଶ | ସତ୍ୟା | ବିମଳା ପ୍ରକାଶିନୀ, ଢେଙ୍କାନାଳ | ୬୪ | ୨୫/- |
| ଦୁର୍ଗାଚରଣ ମହାପାତ୍ର | ନିଗମ ଚରିତାମୃତ | ଲକ୍ଷ୍ମୀନାରାୟଣ ମହାପାତ୍ର, ବାଲେଶ୍ୱର | ୫୬୦ | ୭୫/- |
| ଶରତ ଚନ୍ଦ୍ର ମିଶ୍ର | ବିଜ୍ଞାନର ବିସ୍ମୟ | ଗ୍ରନ୍ଥ ମନ୍ଦିର, କଟକ | ୮୪ | ୩୫/- |
| | ନୟନ ଓ ଦର୍ଶନ | ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ, କଟକ | ୭୦ | ୩୫/- |
| | ବିଜ୍ଞାନ ପ୍ରଯୋଜନା-୧ | କଟକ ଷ୍ଟୁଡେଣ୍ଟସ ଷ୍ଟୋର, କଟକ | ୭୪ | ୪୦/- |
| | ବିଜ୍ଞାନ ପ୍ରଯୋଜନା-୨ | ,, | ୭୪ | ୪୦/- |
| | ଅଥଳ ସାଗରର ଅଜବ ଜଳଚର | ଆନନ୍ଦ ପ୍ରକାଶନ, କଟକ | ୯୬ | ୪୦/- |
| | ବିଶ୍ୱର ବିଚିତ୍ର ବିହଙ୍ଗ | ମନୋଜ ପ୍ରକାଶନ, କଟକ | ୮୦ | ୪୦/- |
| | ସନ୍ଧାନ ପଥେ ବିଜ୍ଞାନ | ଗଜପତି, କଟକ | ୮୨ | ୪୦/- |
| ସଭ୍ୟ ବୃନ୍ଦ, ଯଜ୍ଞ କମିଟି | ମହାଯଜ୍ଞ | ମାଣିକ ଚାନ୍ଦ ଅଗ୍ରୱାଲ, ଜୁନାଗଡ଼ | ୫୮ | ୨୦/- |
| ମାଣିକ ଚାନ୍ଦ ଅଗ୍ରୱାଲ | ଜୀବନ ଜୀବନ | ନିର୍ମାତା ପବ୍ଲିକେଶନ୍ସ, ଭବାନୀପାଟଣା | ୪୫ | ୪୦/- |
| ସଭ୍ୟବୃନ୍ଦ, ଯଜ୍ଞ କମିଟି | ନାମଯଜ୍ଞ | ମାଣିକ ଚାନ୍ଦ ଅଗ୍ରୱାଲ, ଜୁନାଗଡ଼ | ୬୦ | ୨୦/- |

| ଲେଖକ | ପୁସ୍ତକର ନାମ | ପ୍ରକାଶକ | ପୃଷ୍ଠା | ମୂଲ୍ୟ |
|---|---|---|---|---|
| ମୃତ୍ୟୁଞ୍ଜୟ ନାରାୟଣ ବଳ | ଛାଇ ଲେଉଟାଣି | ପ୍ରିୟମ୍ବଦା ଜେନା, ଯାଜପୁରରୋଡ଼ | ୧୦୬ | ୮୦/- |
| ସରୋଜ କୁମାର ଦାସ | ଅନନ୍ତ ବିଜ୍ଞାନ | ପୁଷ୍ପରେଣୁ ଦାସ, ଜଗତସିଂହପୁର | ୪୮ | ୨୫/- |
| କ୍ରାନ୍ତି କୁମାର ସାକ୍‌ସେନା | କୁହ କିଏ ଗାନ୍ଧୀ ଆସୁଛି ?? | ଆସୋଜନ ସ୍ୱେଚ୍ଛାସେବୀ, ଭୁବନେଶ୍ୱର | ୬୮ | ୨୦/- |
| ନିତ୍ୟାନନ୍ଦ ମିଶ୍ର | ବୀର ବୈଷ୍ଣବଙ୍କ ଜୀବନ ଗାଥା | ଉପାସନା ପରିଷଦ, ଢେଙ୍କାନାଳ | ୧୪୭ | ୭୫/- |
| ଶଶାଙ୍କ ଶେଖର ଦାଶ | ବଡ଼ଲୋକଙ୍କ ପିଲାଦିନ | ଅଜୟ କୁମାର ଜେନା, ଯାଜପୁର | ୩୨ | ୧୫/- |
| ବୈରୋଚନ ସୂତାର | ଖାଇବା ଆସ ଗୁପଚୁପ୍ | ବିଷ୍ଣୁପ୍ରିୟା ଓଝା, କେନ୍ଦୁଝର | ୪୦ | ୧୨/- |
| ମାଳାକାର | କଥା କୁହୁକ | ବିଦ୍ୟାଭାରତୀ, ବାଲେଶ୍ୱର | ୭୨ | ୧୮/- |
| ଶାନ୍ତନୁ କୁମାର ମହାନ୍ତି | ଯୁଗେ ଯୁଗେ କନିକା | ସତ୍ୟବ୍ରତ ପ୍ରକାଶନୀ, କଟକ | ୧୭୮ | ୭୦/- |
| | ଚାନ୍ଦବାଲିର ଐତିହ୍ୟ ଇତିବୃତ୍ତ | ତାରାତାରିଣୀ ବୁକ୍ ଷ୍ଟୋର, କଟକ | ୧୧୫ | ୬୦/- |
| କିଶୋର ଚନ୍ଦ୍ର ସାହୁ | ନିଜ ସହ ଲୁଚକାଳି | ଜଗନ୍ନାଥ ରଥ, କଟକ | ୧୩୦ | ୫୫/- |
| ଭାଗୀରଥି ମହାସୁଆର | ଭିନ୍ନ ଦୃଷ୍ଟିକୋଣ | ହରପ୍ରିୟା ମହାସୁଆର | ୮୭ | ୪୫/- |
| | ମଣିଷ କଳ | ଶ୍ରୀଧର ସାମଲ | ୧୦୬ | ୫୨/- |
| ଭାଗବତ ପ୍ରସାଦ ଲେଙ୍କା | କାର୍ଗିଲ ଯୁଦ୍ଧର ଲହୁଲୁହର କାହାଣୀ | ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ, କଟକ | ୫୮ | ୨୫/- |
| | ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ଶିଶୁ ସାହିତ୍ୟ | ତକ୍ଷଶୀଳା, କଟକ | ୩୨୦ | ୯୦/- |
| | Chhau, the shining ornament of Eastern Art and Culture (All styles of Indian Chhau) | ରାଜଶ୍ରୀ ପ୍ରକାଶନୀ , ବାରିପଦା | ୨୭୬ | ୪୫୦/- |
| ଲକ୍ଷ୍ମୀକାନ୍ତ ଖୁଣ୍ଟିଆ | ଆଧୁନିକ ଓଡ଼ିଆ ଶିଶୁ ସାହିତ୍ୟ ବ୍ୟାପ୍ତି ଓ ବୈଚିତ୍ର୍ୟ | ଦେବାଶିଷ ପ୍ରକାଶନ, ଭୁବନେଶ୍ୱର | ୩୨୦ | ୧୫୦/- |
| | କମ୍ପ୍ୟୁଟରର ଭିତିରି କଥା | ଦିବ୍ୟଦୂତ ପ୍ରକାଶନୀ, କଟକ | ୮୦ | ୩୫/- |
| | ସମୟ କହେ ମୁଁ ଠିକ୍ ଠିକ୍ | ଶିଶୁକଲମ ପ୍ରକାଶନୀ, ଭୁବନେଶ୍ୱର | ୫୬ | ୨୦/- |
| | ଆମ ପ୍ରାର୍ଥନା | ସୁନାପିଲା ପ୍ରକାଶନୀ, କଟକ | ୪୦ | ୧୦/- |
| | ଭାରତରତ୍ନ ଭି.ଭି.ଗିରି | ,, | ୩୨ | ୫/- |
| | ମହାନାୟକ ଅଟଳବିହାରୀ ବାଜପେୟୀ | ,, | ୩୨ | ୫/- |
| | ଭାରତର ରାଷ୍ଟ୍ରପତି ଶଙ୍କର ଦୟାଲ ଶର୍ମା | ,, | ୩୨ | ୫/- |
| | ଭାରତର ରାଷ୍ଟ୍ରପତି ଜ୍ଞାନୀ ଜୈଲ ସିଂହ | ,, | ୩୨ | ୫/- |
| | ରାଜନୀତି କୁଇଜ୍ | ,, | ୮୦ | ୬/- |
| | ଜାତୀୟ ନେତାଙ୍କ ଅମରବାଣୀ | ,, | ୧୦୪ | ୧୦/- |
| | ଜାତୀୟ କବିଙ୍କ ଅମରବାଣୀ | ,, | ୧୦୪ | ୧୦/- |
| | ତେନାଲିରାମ କାହାଣୀ | ଜ୍ଞାନ ରାଇଜ ପ୍ରକାଶନୀ, ପୁରୀ | ୪୦ | ୧୫/- |

| ଲେଖକ | ପୁସ୍ତକର ନାମ | ପ୍ରକାଶକ | ପୃଷ୍ଠା | ମୂଲ୍ୟ |
|---|---|---|---|---|
| ଶକୁନ୍ତଳା ମିଶ୍ର | ନବ ପଲ୍ଲବ | ଶକୁନ୍ତଳା ମିଶ୍ର | ୪୬ | ୩୦/- |
| | ଗୀତିକାଞ୍ଜଳି | ଶକୁନ୍ତଳା ମିଶ୍ର | ୯୩ | ୪୦/- |
| ପ୍ରେମାନନ୍ଦ ନାୟକ | ଲୁଚି ଲୁଚି ଗୁପଚୁପ୍ ଖିଆ | ଗୀତାଞ୍ଜଳି ନାୟକ, ସାଲେପୁର | ୩୮ | ୧୬/- |
| ନିରଞ୍ଜନ ସାହୁ | କେମିତି ଏମିତି ହେଲା (୧ମ ଭାଗ) | ଅଜୟ କୁମାର ଜେନା, ବରୀ | ୪୪ | ୧୫/- |
| | ଓ (୨ୟ ଭାଗ) | | ୫୬ | ୨୦/- |
| ଭାଗୀରଥି ନେପାକ | ପୁରାଣ କଥା ଓ କାହାଣୀ(ବ୍ରହ୍ମପୁରାଣ) | ମହିମା ପ୍ରକାଶନ, ଭୁବନେଶ୍ୱର | ୮୦ | ୩୦/- |
| | ତୈଲଙ୍ଗ ସ୍ୱାମୀ | କଲ୍ୟାଣ ପ୍ରକାଶନ, ଭୁବନେଶ୍ୱର | ୭୮ | ୨୫/- |
| | ଓଡ଼ିଆ ସାହିତ୍ୟର ପ୍ରମୁଖ କବି ପ୍ରତାପ ରାୟ | ମହିମା ପ୍ରକାଶନ, ଭୁବନେଶ୍ୱର | ୭୨ | ୩୦/- |
| | ବଣ୍ଡା ଓଡ଼ିଶାର ଆଦିବାସୀ | କଳିଙ୍ଗ ଷ୍ଟୁଡେଣ୍ଟସ ଷ୍ଟୋର, କଟକ | ୪୮ | ୨୫/- |
| କୁମାର କବି ଅରକ୍ଷିତ ପ୍ରଧାନ | ସଂସ୍କୃତ ସାହିତ୍ୟରେ ହାସ୍ୟରସ | ନିଜେ ଲେଖକ | ୩୯୨ | ୧୫୦/- |



# ପ୍ରକାଶକମାନଙ୍କ ଦ୍ୱାରା ପ୍ରକାଶିତ ପୁସ୍ତକ

| ଲେଖକ | ପୁସ୍ତକର ନାମ | ପୃଷ୍ଠା | ମୂଲ୍ୟ |
|---|---|---|---|
| **ଅପୂର୍ବା, ୪୮, ମଧୁସୂଦନ ନଗର, ୟୁନିଟ୍-୪, ଭୁବନେଶ୍ୱର ୭୫୧ ୦୦୧** | | | |
| ପଙ୍କଜ ପାଲ | ଓଯେ ପ୍ରଥମା | | ୭୦/- |
| ଉମେଶ ଚନ୍ଦ୍ର ମିଶ୍ର | ଅସମୟର ପୁତ୍ର | | ୭୦/- |
| ରଶ୍ମୀ ରାଉଳ | ସବୁଜ ଅନ୍ଧାର | | ୭୦/- |
| ଉମା ଶଙ୍କର ପଣ୍ଡା (ଅନୁବାଦକ) | ପାପକଥା ପ୍ରେମକଥା | | ୧୨୫/- |
| ପ୍ରଭାସିନୀ ଦେବୀ (ଅନୁବାଦିକା) | କାମରୂପର କାହାଣୀ | | ୧୪୦/- |
| ସତ୍ୟାନନ୍ଦ ସେଠୀ | ଅସ୍ତରାଗର ରଙ୍ଗ | | ୬୦/- |
| ଅଶୋକ ମହାନ୍ତି | ବେକାର ଜୀବନର କାହାଣୀ | | ୧୦୦/- |
| ସ୍ୱରାଜଲକ୍ଷ୍ମୀ ମିଶ୍ର | ସମୁଦ୍ରର ସହରରୁ | | ୭୦/- |
| କାନନ ମିଶ୍ର | A Tryst with Life | | ୧୬୦/- |
| ସବିତା ତ୍ରିପାଠୀ | ଅଙ୍ଗୀକାରବଦ୍ଧତା | | ୧୨୫/- |
| ସୃଷ୍ଟି ବିଚାର | ଭୁବନାନନ୍ଦ ତ୍ରିପାଠୀ | | ୭୦/- |
| ଫନୀ ମହାନ୍ତି | ଦ୍ୱିତୀୟ ଈଶ୍ୱର | | ୭୦/- |
| ଅଶ୍ୱିନୀ କୁମାର ମିଶ୍ର | ମହାବାତ୍ୟାର ଆଖି | | ୭୦/- |
| ମାୟାଧର ମହାପାତ୍ର | ମାଟିରୁ ଆକାଶ | | ୬୦/- |
| ଫଣୀନ୍ଦ୍ର ଭୂଷଣ ନନ୍ଦ | ଶୂନ୍ୟ ବିନ୍ଦୁ | | ୬୦/- |
| ସୁଧୀର କୁମାର ଦାସ | ସୂର୍ଯ୍ୟାସ୍ତର ରଙ୍ଗ | | ୬୦/- |
| ଇନ୍ଦିରା ଶୁଭଦର୍ଶିନୀ ତ୍ରିପାଠୀ | ରାଗ ବିରାଗ | | ୭୦/- |
| ରବୀନ୍ଦ୍ର କୁମାର ଜେନା | ଶିଶୁ ସୌରଭ | | ୭୦/- |
| ଉପେନ୍ଦ୍ର ନାଥ ଦାସ | ବଣମଲ୍ଲୀ | | ୨୦/- |
| ଫଣୀନ୍ଦ୍ର ଭୂଷଣ ନନ୍ଦ | ବଣ ରାଇଜ | | ୨୦/- |
| **ତାରା ତାରିଣୀ ପୁସ୍ତକାଳୟ, ବ୍ରହ୍ମପୁର, ଗଞ୍ଜାମ- ୭୬୦ ୦୦୧** | | | |
| ବେଣୀ ମାଧବ ପାଢ଼ୀ | ସ୍ମୃତି ଅଣୀବରଷର | ୨୦୧ | ୯୦/- |
| ରମେଶ ପାଣିଗ୍ରାହୀ | ହେ ପୃଥିବୀ ବିଦାୟ | ୬୧ | ୨୫/- |
| ଗୋପୀନାଥ ପଟ୍ଟନାୟକ | ବେଙ୍ଗୁଲୀ ଆଖିରେ ଲୁହ | ୬୪ | ୧୮/- |

| ଲେଖକ | ପୁସ୍ତକର ନାମ | ପୃଷ୍ଠା | ମୂଲ୍ୟ |
|---|---|---|---|
| ନିର୍ମଳ ମିଶ୍ର | ଭଲ ଭଲ ଗପ | ୧୧୨ | ୨୦/- |
| ଯଜ୍ଞଦତ୍ତ ସାମନ୍ତରାୟ | କଥା ପରି କଥା | ୪୧ | ୧୫/- |
| ଅଭିରାମ ପଣ୍ଡା | ପିଲାଙ୍କ ପୁରାଣ କଥା | ୪୯ | ୧୫/- |
| ଅଭିମନ୍ୟୁ ଦଳାଇ | ବୃକ୍ଷ ଆମ ଦେବତା | ୫୩ | ୧୮/- |
| ପଞ୍ଚାନନ ରଥ | ସଂଖ୍ୟାକ୍ଷରର ଶବ୍ଦ ବୈଶିଷ୍ଟ୍ୟ | ୪୮ | ୨୦/- |
| ଶିବରାମ ରଥ | ଓଷା କୋଠି | ୬୨ | ୪୦/- |
| ଦେବୀ ପ୍ରସନ୍ନ ପଟ୍ଟନାୟକ | ବିପୁଳାଚ ପୃଥ୍ୱୀ: ବିଦ୍ରୂପିତ ଭାଗ୍ୟ | ୨୪୦ | ୧୩୦/- |
| ଅଭିମନ୍ୟୁ ଦଳାଇ | ଅମରଭକ୍ତି କଥା | ୯୮ | ୨୦/- |
| ବିପିନ ମହାପାତ୍ର | ପଞ୍ଚସଖା ଉପାଖ୍ୟାନ | ୪୩ | ୧୬/- |

ଲୋକସଂସ୍କୃତି ଗବେଷଣା କେନ୍ଦ୍ର, ନୂଆସାହି, ଭଞ୍ଜନଗର, ଗଞ୍ଜାମ-୭୬୧ ୧୨୬

| | | | |
|---|---|---|---|
| | ଲୋକ ସଂସ୍କୃତି ବିଚାର | ୧୦୬ | ୫୦/- |
| | ଲୋକ ସଂସ୍କୃତି ଆଲୋଚନା | ୧୧୦ | ୫୦/- |

ସୃଜନିକା, ଢାଗମରା, ଖଣ୍ଡଗିରି, ଭୁବନେଶ୍ୱର-୭୫୧ ୦୩୦

| | | | |
|---|---|---|---|
| | ପରିବେଶ ଦର୍ପଣ | ୯୬ | ୨୦/- |
| | ହାତ ତିଆରି ଖେଳନା | ୬୪ | ୧୫/- |
| ବ୍ରଜ କିଶୋର ଜେନା | ସହଜରେ ଆଙ୍କିବା ଗଛଲତା | ୬୪ | ୧୫/- |

# Participants of the
# 18th BHUBANESWAR BOOK FAIR

| Sl.No. | Name of the Participant | Place | Stall No. |
|---|---|---|---|
| 1. | RAMAKRISHNA MATH | Bhubaneswar | 1, 2 |
| 2. | GRANTHA MANDIR | Cuttack | 3, 4 |
| 3. | FRIEND'S PUBLISHERS | Cuttack | 5, 6, 7 |
| 4. | VIDYAPURI | Cuttack | 8, 9, 10 |
| 5. | ORISSA BOOK STORE | Cuttack | 11, 12 |
| 6. | PRACHI SAHITYA PRATISTHAN | Cuttack | 13, 14 |
| 7. | S.B. PUBLICATIONS | Cuttack | 15 |
| 8 | SATYANARAYAN BOOK STORE | Cuttack | 16, 17 |
| 9. | CUTTACK STUDENTS STORE | Cuttack | 18, 19 |
| 10. | CHITROTPALA PUBLICATION | Salepur | 20 |
| 11. | CHANDRA BHAGA | Bhubaneswar | 21 |
| 12. | SUBARNAREKHA | Bhubaneswar | 22 |
| 13. | CHINMAYA MISSION | Bhubaneswar | 23, 24 |
| 14. | PASCHIMA | Bhubaneswar | 25 |
| 15. | JUGASAKTI GAYATRI | Bhubaneswar | 26, 27 |
| 16. | SRI PATITAPABANA STORE | Cuttack | 28 |
| 17. | KADAMBINI | Bhubaneswar | 29 |
| 18. | KALYAN PUSTAK BHANDAR | Bhubaneswar | 30 |
| 19. | PRAJATANTRA PRACHAR SAMITY | Cuttack | 31 |
| 20. | AGRADUTA | Cuttack | 32 |
| 21. | BUS STAND BOOK STORE | Bhubaneswar | 33, 34 |
| 22. | CHATURANGA PRAKASANI | Bhubaneswar | 35 |
| 23. | GRANTHALAYA | Bhubaneswar | 36 |
| 24. | JAGANATH RATH | Cuttack | 37 |
| 25. | AITBS PUBLISHER | New Delhi | 38, 39 |
| 26. | ORISSA BOOK EMPORIUM | Cuttack | 40 |

| Sl.No. | Name of the Participant | Place | Stall No. |
|---|---|---|---|
| 27. | THE LAW | Cuttack | 41 |
| 28. | UPAKAR PRAKASHAN | Agra | 42, 43, 44 |
| 29. | BOOK JUNCTION | Bhubaneswar | 45, 46 |
| 30. | CUTTACK LAW HOUSE | Cuttack | 47 |
| 31. | PADMALAYA | Bhubaneswar | 48, 49, 50 |
| 32. | PDC NETWORK | Bhubaneswar | 51, 52 |
| 33. | ORISSA SAHITYA AKADEMI | Bhubaneswar | 53 |
| 34. | SARASWATI BOOK GARDEN | Bhubaneswar | 54, 55 |
| 35. | BOOKS AND BOOKS | Cuttack | 56, 57 |
| 36. | NISWAS | Bhubaneswar | 58 |
| 37. | INDIAN BOOK DISTRIBUTOR | Cuttack | 59, 60 |
| 38. | ARYA PRAKASHAN | Cuttack | 61 |
| 39. | HIMALAYAPUBLISHING HOUSE | New Delhi / Mumbai | 62, 63 |
| 40. | SRIRAM BOOK STORE | Bhubaneswar | 64, 65 |
| 41. | HOLY FAITH INTERNATIONAL WORLD | Bhubaneswar | 66 |
| 42. | MODERN PUBLISHERS | Bhubaneswar | 67 |
| 43. | LIGAL ASSOCIATES | Cuttack | 68 |
| 44. | SAIL RAKAB PUTHI CENTRE | Kolkata | 69 |
| 45. | BHAGABAD VANI PRAKASHAN | Lucknow | 70 |
| 46. | BRAHMA BIDYA SAMITY | Bhubaneswar | 71 |
| 47. | MIRA ADITI CENTRE | Mysore | 72 |
| 48. | R.K. LAW HOUSE | Cuttack | 73 |
| 49. | HOBBY CENTRE | Cuttack | 74 |
| 50. | SREE BOOK STORE | Bhubaneswar | 75, 76 |
| 51. | NATIONAL ATLAS AND THEMATIC MAPPING ORGANISATION | Kolkata | 77 |
| 52. | SRC FOR ADULT EDUCATION | Bhubaneswar | 78 |
| 53. | PRAJAPITA BRAHMAKUMARI ESWARIYA VISWA VIDAYALAYA | Bhubaneswar | 79 |
| 54. | SANGIT KARYALAYA | Huthrus (U.P.) | 80 |
| 55. | SATYASAI SEBA SAMITY | Bhubaneswar | 81 |

| Sl.No. | Name of the Participant | Place | Stall No. |
|---|---|---|---|
| 56. | AHAMADIA INTERNATIONAL | Bhubaneswar | 82 |
| 57. | ORISSA STATE BUREAU OF TEXT BOOK PREPARATION AND PRODUCTION | Bhubaneswar | 83, 84 |
| 58. | SILICON SAHITYA | Bhubaneswar | 85 |
| 59. | RASHMI ENTERPRISES | Bhubaneswar | 86 |
| 60. | ANANDA MARGA PUBLICATION | Bhubaneswar | 87 |
| 61. | WORLD BOOK CENTRE | Kolkata | 88 |
| 62. | ORISSA SWASTHYA SEVA SANGHA | Bhubaneswar | 89 |
| 63. | THE NEW BOOK CORNER | Kolkata | 90, 91 |
| 64. | CHAKRAVARTY & CHATTERJEE & COMPANY LTD. | Kolkata | 92. 93 |
| 65. | ORIENT LONGMAN | Kolkata | 94, 95 |
| 66. | MACMILLAN INDIA LTD. | Kolkata | 96-97 |
| 67. | CHIDANANDA SPIRITUAL BOOK STORE | Bhubaneswar | 98, 99 |
| 68. | BEST SELLER PUBLICATION | Bhubaneswar | 100 |
| 69. | BOOK FOR CHANGE | Bhubaneswar | 101 |
| 70. | ORISSA LAW REVIEW | Cuttack | 102 |
| 71. | I.C.F.A. OF INDIA | Bhubaneswar | 103 |
| 72. | NATYA CHETANA | Bhubaneswar | 104 |
| 73. | BHARATI BOOK STORE | Bhubaneswar | 105 |
| 74. | GANESH STATIONARY WORKS | Bhubaneswar | 106 |
| 75. | ADIM BOOK STORE | Singhbhum(Jharkanda) | 107 |
| 76. | DUTTA'S PUBLICATION | Bhubaneswar | 108 |
| 77. | NABAJUGA GRANTHALAYA | Cuttack | 109 |
| 78. | LEARNING ACCESS | Bhubaneswar | 110 |
| 79. | ORIYA ISLAMI SAHITYA PRAKASHAN | Bhubaneswar | 111 |
| 80. | BOOK WORLD | Kolkata | 112 |
| 81. | BANKING SERVICE CHRONICLE | Bhubaneswar | 113 |
| 82. | CAREER LAUNCHER | Bhubaneswar | 114 |
| 83. | NET-4 MARKETING | Bhubaneswar | 115 |
| 84. | CARAM | Bhubaneswar | 116 |

| Sl.No. | Name of the Participant | Place | Stall No. |
|---|---|---|---|
| 85. | ACADEMI OF TRIBAL DILECTS & CULTURE | Bhubaneswar | 117 |
| 86. | NATIONAL BOOKS AND MAGAZINE | Kolkata | 118, 119 |
| 87. | BARGAIN BOOKS | Kolkata | 120, 121 |
| 88. | PUZZLE WORLD PUBLICATION | Kolkata | 122 |
| 89. | GRASS ROOT | Bhubaneswar | 123 |
| 90. | WOUNDERLAND BOOK DISTRIBUTORS | Kolkata | 124 |
| 91. | GRANTHA JAGATA | Bhubaneswar | 125 |
| 92. | CENTRE FOR PHYSICS AND CHEMISTRY | Bhubaneswar | 126 |
| 93. | NATIONAL PUBLISHING HOUSE | Kolkata | 127, 128 |
| 94. | PRIYA DISTRIBUTERS | New Delhi | 129,130, 131 |
| 95. | GOPALJEE SALES | New Delhi | 132, 133 |
| 96. | R.S. BOOKS INTERNATIONAL | Kolkata | 134,135, 136 |
| 97. | MOTILAL BANARASI DASS PUBLISHERS LTD. | New Delhi | 137, 138 |
| 98. | KALINGA LAW HOUSE | Bhubaneswar | 139 |
| 99. | AVIN BOOK DISTRIBUTERS | New Delhi | 140, 141 |
| 100. | NAYAR BOOK SERVICE | New Delhi | 142,143, 144 |
| 101. | KAVAITA PUBLISHER AND DISTRIBUTOR | New Delhi | 145, 146 |
| 102. | TECH BOOK | Bhubaneswar | 147, 148 |
| 103. | RAJKAMAL PRAKASHAN | New Delhi/ Patna | 149, 150 |
| 104. | ADRASHA ENTERPRISERS | New Delhi | 151, 152 |
| 105. | NATIONAL BOOK TRUST OF INDIA | New Delhi | 153, 154 |
| 106. | BANISHREE BOOK HOUSE | Bhubaneswar | 155, 156 |
| 107. | BOOKS-IN-FO BOWLS | Bhubaneswar | 157, 158 |
| 108. | TIMELY BOOK CENTRE | Kolkata | 159, 160,161 |
| 109. | KALYANI PUBLISHERS | Ludhiana | 162,163, 164 |
| 110. | ALLIED PUBLISHERS LTD. | Kolkata | 165,166, 167 |
| 111. | TRIMURTY ENTERPRISES | New Delhi | 168, 169 |
| 112. | PRENTICE HALL OF INDIA | New Delhi/ Kolkata | 170, 171 |
| 113. | SABNAM PUSTAK MAHAL | Cuttack | 172,173, 174 |
| 114 | BIDYA SAGAR | Cuttack | 175, 176 |
| 115. | SHYAM BOOK SUPPLIER | Berhampur | 177, 178 |

| Sl.No. | Name of the Participant | Place | Stall No. |
|---|---|---|---|
| 116. | INK ORISSA | Bhubaneswar | 179 |
| 117. | EAST BENGAL BOOK STALL | Kolkata | 180, 181 |
| 118. | CIMS TECHNOLOGY | Bhubaneswar | 182 |
| 119. | THE C.D. WORLD | Bhubaneswar | 183 |
| 120. | NATIONAL HARDWARE INFORMATIC CENTRE | Bhubaneswar | 184 |
| 121. | MEGASOFT COMPUTOR EDUCATION | Bhubaneswar | 185 |
| 122. | CYBER TECH SOFTWARE & MULTI MEDIA | Bhubaneswar | 186 |
| 123. | NEHA INFOSYSTEM. | Bhubaneswar | 187 |
| 124. | PBS COMPUTECH | Bhubaneswar | 188 |
| 125. | INFO WORLD | Bhubaneswar | 189, 190 |
| 126. | EAST END INFOTECH | Bhubaneswar | 191 |
| 127. | HI-TECH SYBER CAFE | Bhubaneswar | 192 |
| 128. | VISUAL AID COMPUTERS | Bhubaneswar | 193 |
| 129. | WORLD BOOK ENTERPRISER | New Delhi | 194 |
| 130. | PRABHAT PRAKASHAN | Patna | 195 |
| 131. | JUGA NIRMANA SAMITY | Cuttack | 196 |
| 132. | STAMP HOUSE | Cuttack | 197 |
| 133. | RAMESH PUBLISHING HOUSE | New Delhi | 198 |
| 134. | GRANTHA BHARATI | Bhubaneswar | 199 |
| 135. | GITA PRESS | Gorakhapur | 200, 201 |
| 136. | SIVANANDA SAHITYA PRACHAR SAMITY | Bhubaneswar | 2002 |
| 137. | ORISSA WRITERS COOPERATIVE SOCIETY | Bhubaneswar | 203 |
| 138. | SATHI PRAKASHAN | Cuttack | 204 |
| 139. | GYANAJUGA PUBLICATION | Bhubaneswar | 205 |
| 140. | RADHAKRUSHNA PUSTAKALAYA | Berhampur | 206 |
| 141. | BOOK MOVEMENT | Bhubaneswar | 207 |
| 142. | SUDHANYA | Bhubaneswar | 208 |
| 143. | BASANTA PUBLICATION | Cuttack | 209 |
| 144. | SRUJANIKA | Bhubaneswar | 210 |
| 145. | SAMBHABANA | Bhubaneswar | 211 |

| Sl.No. | Name of the Participant | Place | Stall No. |
|---|---|---|---|
| 146. | TARATARINI PUSTAKALAYA | Berhampur | 212 |
| 147. | KANAKADURGA BOOK DISTRIBUTORS | Berhampur | 213, 214 |
| 148. | AUROBINDO SANSKRUTI SANSADA | Bhubaneswar | 215 |
| 149. | APURBA | Bhubaneswar | 216 |
| 150. | DIRECTORATE OF CULTURE | Bhubaneswar | 217 |
| 151. | RADHARAMAN PUSTAKALAYA | Cuttack | 218 |
| 152. | JOGADA SATSANGA SOCIETY | Bhubaneswar | 219 |
| 153. | ZIGMA LIBRARY | Bhubaneswar | 220, 221 |
| 154. | STATE BAHAI COUNCIL | Bhubaneswar | 222, 223 |
| 155. | MADHAB BOOK STORE | Cuttack | 224,225, 226 |
| 156. | SAGAR BOOK STORE | Bhubaneswar | 227,228,229 |
| 157. | GOVT. OF INDIA DEPARTMENT OF POST. | Bhubaneswar | 230 |
| 158. | SAHITYA AKADEMI | New Delhi | 231, 232 |
| 159. | KRUSHNA MURTY FOUNDATION | Pune | 233, 234 |
| 160. | STANDARD LITERATURE ASSOCIATES | Kolkata | 235, 236 |
| 161. | DHARITRI | Bhubaneswar | 237, 238 |
| 162. | THE HINDU | Chennai | 239, 240 |
| 163. | EXPRESS PUBLICATION (New Indian Express) | Madurai | 241, 242 |
| 164. | THE MALAYALA MANORAMA (The Week) | Kochi, Kerala | 243 |
| 165. | THE STATESMAN | Kolkata | 244 |
| 166. | MEDIA ORISSA | Bhubaneswar | 245 |
| 167. | A.K. MISRA | Cuttack/ Bhubaneswar | 246-270 |
| 168. | ARAMBAG CHICKEN | Kolkata | |
| 169. | GUPCHUP | Bhubaneswar | |
| 170. | CANTEEN | Bhubaneswar | |

# ଅଷ୍ଟାଦଶ ଭୁବନେଶ୍ୱର ପୁସ୍ତକ ମେଳାରେ ବିଭିନ୍ନ ଦିବସର ସାଂସ୍କୃତିକ କାର୍ଯ୍ୟକ୍ରମ

## ସ୍ଥାନ : ଗଙ୍ଗାଧର ମେହେର ମଣ୍ଡପ

### ପ୍ରଦର୍ଶନୀ ପଡ଼ିଆ (ପଶ୍ଚିମପାଖ), ୟୁନିଟ୍-୩

### ସମୟ: ପ୍ରତ୍ୟହ ଅପରାହ୍ଣ

| | |
|---|---|
| ୨୬।୨।୨୦୦୭ (ମଙ୍ଗଳବାର) | ଉଦ୍‌ଘାଟନ ଉତ୍ସବ<br>ଉଦ୍‌ଘାଟକ - **ଶ୍ରୀଯୁକ୍ତ ଶରତ କୁମାର କର**, ମାନ୍ୟବର ବାଚସ୍ପତି, ଓଡ଼ିଶା<br>ମୁଖ୍ୟଅତିଥି- **ପଦ୍ମଶ୍ରୀ ସଚ୍ଚି ରାଉତରାୟ** |
| ୨୭।୨।୨୦୦୭ (ବୁଧବାର) | କେନ୍ଦ୍ର ସାହିତ୍ୟ ଏକାଡେମୀ ପୁସ୍ତକ ଉନ୍ମୋଚନ ଉତ୍ସବ |
| ୨୮।୨।୨୦୦୭ (ଗୁରୁବାର) | କବିତା ପାଠୋତ୍ସବ (ଆୟୋଜକ-ସମକାଳୀନ କବି ସମାଜ ଓ ପୁସ୍ତକ ମେଳା) |
| ୦୧।୩।୨୦୦୭ (ଶୁକ୍ରବାର) | ଲେଖିକା ସଂସଦ ଓ ଶତଭିଷା ଅନୁଷ୍ଠାନ ପକ୍ଷରୁ ସାହିତ୍ୟିକ ସମାବେଶ |
| ୦୨।୩।୨୦୦୭ (ଶନିବାର) | ସତ୍ୟସାଇ ସେବା ସମିତି, ଭୁବନେଶ୍ୱର-ସାଂସ୍କୃତିକ ଉତ୍ସବ |
| ୦୩।୩।୨୦୦୭ (ରବିବାର) | ଇଟିକିଲି ମିଟିକିଲି - ଶିଶୁ ପ୍ରତିଭା ସମାରୋହ |
| ୦୪।୩।୨୦୦୭ (ସୋମବାର) | ଉତ୍କଳ ସମ୍ମିଳନୀ ତରଫରୁ ସମାବେଶ |
| ୦୫।୩।୨୦୦୭ (ମଙ୍ଗଳବାର) | 'ଏକ ଗୁଚ୍ଛ ଓଡ଼ିଆ ଗଳ୍ପ'ର ଉନ୍ମୋଚନ ଉତ୍ସବ ଓ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କୁ ସମ୍ବର୍ଦ୍ଧନା, ମୁଖ୍ୟଅତିଥି- **ଜାନକୀ ବଲ୍ଲଭ ପଟ୍ଟନାୟକ**<br>ବିଶିଷ୍ଟ ଅତିଥି- **ଅଶୋକ ଦାସଗୁପ୍ତ**, ସଂପାଦକ ଦୈନିକ 'ଆଜକାଲ', କୋଲକାତା |
| ୦୬।୩।୨୦୦୭ (ବୁଧବାର) | ଉଦ୍‌ଯାପନ ଉତ୍ସବ (ପୁରସ୍କାର ଓ ସମ୍ବର୍ଦ୍ଧନା ଉତ୍ସବ)<br>ମୁଖ୍ୟଅତିଥି- **ଡକ୍ଟର ସୀତାକାନ୍ତ ମହାପାତ୍ର**<br>ବିଶିଷ୍ଟ ଅତିଥି- **ଡକ୍ଟର ବଂଶୀଧର ପଣ୍ଡା** |
| ୦୭।୩।୨୦୦୭ (ଗୁରୁବାର) | ଶାରଳା ସ୍ମାରକର ବିଶେଷ ଅଧିବେଶନ, ଅଷ୍ଟାଦଶ ପୁସ୍ତକମେଳା ପରିସମାପ୍ତି |